ଉମେଶଚନ୍ଦ୍ର ପାଣିଗ୍ରାହୀ

# [illegible]

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋରସ୍ ଲମିଟେଡ
ବ୍ରହ୍ମପୁର—କଟକ

## ଏଇ ଲେଖକଙ୍କ

ପଥପ୍ରାନ୍ତେ (୨ୟ ସଂ)

ବେଦୁଇନ ଦେଶ

ତରୁଣ ତୁର୍କୀ

ଆଜିର ଆମେରିକା

ଯାତ୍ରୀ

ପ୍ରଶାନ୍ତ ମହାସାଗରର ଅଶାନ୍ତି

## ପ୍ରକାଶମୁଖୀ

ତରଙ୍ଗ ରୋଧିବ କିଏ

ସ୍ୱପ୍ନମୟ ସିଂହଳ

ଦୁର୍ଗମ ପଥେ

ତୁଷାର ତୀର୍ଥ

ଅଫ୍ରିଦି ସୀମାନ୍ତେ

କହଂକଥା

ମା

ପଥପଥେ ଘାଇଛି ଗୁଲି
(ପଥପ୍ରାନ୍ତେର ୨ୟ ଖଣ୍ଡ)

## ବଙ୍ଗଳା

ଅଧିବାସୀର ଦେଶେ

# ଆତ୍ମ ପରିଚୟ

ଆଜ 'ଅଭିଶପ୍ତ' କୌଣସି ପ୍ରକାର ଗୋଟିଏ ରୂପଧରି ପ୍ରକାଶ ପାଉଛି । ଓଡ଼ିଆ ସାହିତ୍ୟର ଧନଭଣ୍ଡାର ପୂର୍ଣ୍ଣ କରିବାକୁ ଏହାର ରଚନାରେ ଯେ ମୁଁ ପ୍ରୟାସୀ ହୋଇଛି, ଏହା ଯେପରି କେହି ନ ଭାବନ୍ତି । ଯାଯାବର ଜୀବନ ଭିତରେ ନାନା ପ୍ରକାର ପରିସ୍ଥିତି ମଧ୍ୟ ଦେଇ ମୋତେ ଯିବାକୁ ପଡ଼େ । ସେହି ପରିସ୍ଥିତିର ଘୂର୍ଣ୍ଣିପାକରେ ପଡ଼ି ଯେଉଁ ଚିନ୍ତାଧାରା ମୋତେ ସ୍ପର୍ଶ କରିଛି—ତାହାରି ଫଳ ଆଜ ଗଳ୍ପାକାରରେ ଏହି ବହି ଖଣ୍ଡିକରେ ସଂଗୃହୀତ ହୋଇଛି । ଏହି କାହାଣୀ ଭିତରେ କୌଣସି ବ୍ୟକ୍ତି ବିଶେଷ ବା ଅନୁଷ୍ଠାନ ବିଶେଷର ଛବି ନାହିଁ । କାହାଣୀ ଗୁଡ଼ିକ ମୋର ଏକାନ୍ତ କଳ୍ପନା ପ୍ରସୂତ । ସୁତରାଂ ଏଥି ମଧ୍ୟରେ କେହି ଯେପରି ନିଜର ଛାୟା ନ ଦେଖନ୍ତି—ଆଗରୁ ସାବଧାନ !

ମୋର ବିଶ୍ୱାସ ଏହି ଗଳ୍ପ ଗୁଡ଼ିକ ପୁସ୍ତକର ଆତ୍ମ-ପରିଚୟ ଦେବ ।

ବଡ଼ମୂଳ କେମ୍ପ, "ପାତକୋଣିଆ"
ଦଶପଲ୍ଲା, ୧୨, ଡିସେମ୍ବର,୧୯୪୩.

ଗ୍ରନ୍ଥକାର

# ଦ୍ୱିତୀୟ ସଂସ୍କରଣ

ପ୍ରଥମ ସଂସ୍କରଣ ଶେଷ ହେବାର ଦୁଇବର୍ଷପରେ ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା । ଏହି ଗଳ୍ପ ଗୁଡ଼ିକ ସବୁ ମୋର ପ୍ରଥମ ଜୀବନର ଲେଖା । ସୁତରାଂ ଏଥି ସଂସ୍କରଣରେ କେଉଁଠି କେମିତି ଟିକିଏ କଲମ ଚଳାଇବାକୁ ପଡ଼ିଛି । ଅଭିଶପ୍ତର ଦ୍ୱିତୀୟ ସଂସ୍କରଣ, ପ୍ରଥମ ସଂସ୍କରଣ ପରି ପ୍ରିୟ ପାଠକ ପାଠିକାମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ମୋର ଦୃଢ଼ ବିଶ୍ୱାସ ।

ଗ୍ରନ୍ଥକାର

# ସବହରାର କର୍ତ୍ତବ୍ୟ

ଗମ୍ଭୀର ଗର୍ଜି !

ଗୋଟିଏ ପଣ କୁଡ଼ିଆ ଭିତରେ କୁଣ୍ଠା ଶେଯ ଉପରେ ଦୁଖିଆ ସୁଖଶୁପ୍ତ । ପଣ କୁଡ଼ିଆର ସାମନାରେ ବଡ଼ ବଡ଼ ଦାନ୍ତା କାଠ ମୁଣ୍ଡାରେ ବେଶ୍ ଧୂନିଟିଏ ହୋଇଛି—କେତେବେଳେ କେମିତି ଟିକିଏ ପବନ ବାଜି ଦପ୍ କରି ଜଳି ଉଠି ପୁଣି ମଉଳି ଯାଉଛି ମଗୁଶୀର ମାସର ଜାଡ଼ରେ । ଦୁଖିଆର ମୁଣ୍ଡ ଆଡ଼କୁ ବାଉଁଶର ବଡ଼ ଧନୁଟାଏ, ଆଉ ତା ପାଖକୁ ଲାଗି କେଇଟା ଶଆଳ କାଣ୍ଡ । କୁଣ୍ଠା ଶେଯ ପାଖକୁ ଲାଗି ତା ସାଥୀରେ ଶୋଇଛି ଗୋଟିଏ ବଡ଼ ବାଉଁଶ ଠେଙ୍ଗା । କୁଡ଼ିଆ ସାମନାରୁ ନଦୀକୂଳ ଯାଏ ପାଚିଲା ଧାନ କ୍ଷେତ । ବହୁଦୂରରେ ଲୋକାଳୟରେ ତାର ଖୀଜନ୍ଦର ଦରଜି ଜହ୍ନର ଆଲୁଅରେ ଅସ୍ପଷ୍ଟ ହୋଇ ଦେଖାଯାଉଥାଏ ଧୋବଧାଉଳିଆ ହୋଇ । ଧାନକ୍ଷେତର ଗୁହ୍ମ ପାଖରେ ଛାୟା ପରି ଅସ୍ପଷ୍ଟ ହୋଇ ଫୁଟି ଉଠୁଥାଏ ଘନବନର ଶ୍ୟାମଳିମା । ସେଇ ନିର୍ଜନ ଘନବନ ଭିତରୁ ବିଲୁଆଦଳ ବେଳେ ବେଳେ 'ହୁକେ-ହୋ' କରି ବୋବାଳି ଛାଡ଼ି ଜଣାଇ ଦେଉଛନ୍ତି—ପରବର୍ତ୍ତୀ ପ୍ରହରର ଆଗମନ ବାର୍ତ୍ତା । କେତେବେଳେ କେମିତି ଜହ୍ନର ଜ୍ୟୋତ୍ସ୍ନାବିଧୌତ ନୀଳ ଆକାଶର ବକ୍ଷ ଉପରେ ଉଡ଼ି ଯାଆନ୍ତି ନିଶାଚର ପକ୍ଷୀଗଣ ଡେଣା ହଲାଇ । ଦୁଖିଆ ଉଦ୍‌ବନ୍ଧ

ହୋଇ ତା'ର କୁଣ୍ଠା-ଶେଯ ଉପରୁ ଉଠିବସେ ଠେଙ୍ଗାଟାକୁ ଧରି । ନିଆଁ ମୁଣ୍ଡା ଉପରେ ଶ୍ଲେଷ୍ଟ ଶ୍ଲେଷ୍ଟ କାଠିକୁଟା ଦି'ଟା ପକାଇ ଫୁ ଫୁ କରି ଦି'ଥର ଫୁଙ୍କିଦିଏ । ଟିକିଏ ମୋଡ ଭିଡ଼ି ହୋଇ ଠେଙ୍ଗା ଧରି ବାହାରି ପଡ଼େ କୁଡ଼ିଆ ସାମନାକୁ । ପଥର ଚଟାଣଟା ଉପରେ ଠେଙ୍ଗାଟା ଦି'ଥର ବାଡ଼େଇ ଦେଇ 'ହେଇରେ ହେଇ, ଗଲ-ଗଲ ବୋଲି ଦି'ଥର କୁହାଟି ଦିଏ—ଆଉ ଦଣ୍ଡେ ଘଡ଼ିଏ ନଦୀକୂଳ ବ୍ୟାପି ପାଚିଲା ଧାନକ୍ଷେତ ଉପରେ ତା'ର ନିର୍ନିମେଷ ଦୃଷ୍ଟି ବୁଲାଇ ଆଣେ ।

ଏହିପରି ଭାବରେ କଟିଯାଏ ତାର ଶୀତଦିନିଆ କେତେ ନିଃସଙ୍ଗ ରଜନୀ । ଆଜି ମଧ୍ୟ ସେ ତା'ର ନିତିଦିନିଆ କର୍ତ୍ତବ୍ୟ 'ଖେତ ପହରା'ରେ ନିଯୁକ୍ତ । ଘଡ଼ିଏ ଦି'ଘଡ଼ି ଗଡ଼ିଗଲେ ଦେଖା-ଯାଏ ସେ ତା'ର ଠେଙ୍ଗାଟା ଧରି ବସିଥାଏ ନିଆଁ ମୁଣ୍ଡା ପାଖରେ ହାତ ପାପୁଲି ଦି'ଟା ନିଆଁ ଆଡ଼କୁ ଦେଖାଇ ଦେଇ । ତା'ର ସ୍ମୃତିର ପରଦା ଉପରେ ଭାସିଯାଏ—ଅତୀତର କେତେ ବର୍ଷର ଦୁଃସହ ଜୀବନ-ଚିତ୍ର, ଗୋଟିଏ ପରେ ଗୋଟିଏ ହୋଇ ଚଳଚିତ୍ର ପରି—. ଏଇ କେଇ ପହରର ସମୟ ଭିତରେ ।

ଅନେକ ଦିନ ଆଗର କଥା । ଦୁଖିଆ ସେତେବେଳେ ଲୁଗା ପିନ୍ଧି ଜାଣି ନ ଥାଏ । ଅକସ୍ମାତ୍ ଏକ ଧାରା ଶ୍ରାବଣର ରାତିରେ ବ୍ରାହ୍ମଣୀ ନଦୀ ପାଗଳ ପରି ଝୁଙ୍କି ଚାଲିଲା ଗାଁ ଭିତରେ ପଶି । ସୁଖସୁପ୍ତ ଗ୍ରାମବାସୀଙ୍କ ମୁହୂର୍ତ୍ତକ ମଧ୍ୟରେ ହାହାକାରମୟ ହୋଇଉଠିଲେ । ସେତେବେଳକୁ ଆଉ ଉପାୟ ନାହିଁ—ଗାଁ ଗୃହପାଖରେ ପାଣି ମାଡ଼ି ଯାଇଛି । ଦୁଖିଆର ବାପ ଓ ମା ଦୁଖିଆକୁ ଧରି ଘର ଚାଳ ଉପରେ ଯାଇ ବସିଲେ—ବର୍ଷାର ପ୍ରବଳ ଧାରାପାତ ମଧ୍ୟରେ । କ୍ରମେ ପାଣିର

ଝୁଙ୍ଗଛା ଓ ସ୍ରୋତର ବେଗ ବଢି ଗ୍ଲୁଥାଏ । ଗାଁଟା ଯାକ ଖାଲି 'ହରି ହେ ରକ୍ଷା କର' ଆର୍ତ୍ତ କ୍ରନ୍ଦନ ଧ୍ୱନିରେ ଉଚ୍ଛୁଳ ପଡୁଥାଏ । ପ୍ରଭାତର ଆଲୋକ ଫୁଟି ନ ଦେଖୁଣୁ ଦୁଖିଆ ଘରର ଦୁର୍ବଳ ମାଟି କାନ୍ଥ କେଇଟି ପ୍ରାଣର ଆଶା ଭରସା କ୍ଷୁଦ୍ର ଗୃହଟିକୁ ସ୍ରୋତମୁଖରେ ଭସାଇଦେଇ ପାଣି ଭିତରେ ମିଳାଇ ଖସି ପଡ଼ିଲା । ଦୁଖିଆର ବାପ ତାକୁ ତା' ମା କୋଳରୁ ନେଇ ନିଜ ଛାତି ଭିତରେ ଯାକି ଧରି ହାଏ ହାଏ କରି ଉଠିଲା । ଏ ଭୟଙ୍କର ଦୃଶ୍ୟ ଓ ପ୍ରବଳ ବାତ୍ୟାଘାତର ଧକ୍କା ଦୁଖିଆର ମା' ସହ୍ୟ କରିପାରିଲା ନାହିଁ । ହୃତପିଣ୍ଡ କ୍ରିୟା ହଠାତ୍ ବନ୍ଦ ହୋଇଗଲା ତାର—ସେ ମାଟି ଫିଟୁଲା ପରି ଗୃହଉପରୁ ଖସିପଡ଼ି ପ୍ରବଳ ବାତ୍ୟାସ୍ରୋତ ମଧ୍ୟରେ ଲୁଚିଗଲା । ଦୁଖିଆର ବାପ କାଠପାଲଟି ବସି ରହିଲା—ଦୁଖିଆକୁ ଆହୁରି ଜୋରରେ ଭିଡ଼ିଧରି । ସେଇଦିନ ରାତିରେ ଗୃହଟି ଗୋଟିଏ ଗଛରେ ଲାଗି ଭାସି ଭାସି କୂଳରେ ଲାଗିଲା । ବାପ ତା'ର ଆଖିରୁ ଲୁହ ପୋଛି ଦୁଃଖିଆକୁ ଧରି ନିକଟସ୍ଥ ଗାଁକୁ ଯାଇ ଟୋପାଏ ଟିକିଏ ମାଗି ଦୁଃଖିଆକୁ ପିଆଇଲା । ଦୁ' ଟା ପ୍ରାଣ ବଞ୍ଚିଗଲା ।

ଯେତେବେଳେ ଦୁଖିଆର ବାପ ଅପଣା ଗାଁକୁ ଫେରି କୁଡ଼ିଆ ତିଆରି ଦୁଖିଆକୁ ଦେଖି ତା'ର ସଂସାର ତିଆରି କଲା—ସେତେ-ବେଳେ ସେ କାନ୍ଦି କାନ୍ଦି ଦୁଖିଆକୁ ଛାତି ଭିତରେ ଭିଡ଼ିଧରି କହୁ-ଥିଲା, ମୁଁ ଅଛିରେ ତୋର ମୁଁ ଅଛି । ମୁଁ ଯେ ତୋର ବାପ ଆଉ ମା ! ବଞ୍ଚିଥିଲେ ଭିକମାଗି ମଧ୍ୟ ତୋତେ ମଣିଷ କରିବି । ଦୁହିଙ୍କ ଆଖିରୁ ପାଣି ଝରି ପଡୁଥିଲା ଝର ଝର ହୋଇ ।

...ଏହିପରି ଭାବରେ କଟିଯାଏ ଦିନପରେ ଦିନ, ବର୍ଷ ପରେ

ବର୍ଷ ସୁଖ ଦୁଃଖର ଭିତର ଦେଇ । ସ୍ମୃତି ଗୁଡ଼ିକ ମଧ୍ୟ ମଉଳି ଆସେ ଟିକିଏ ଟିକିଏ କରି ।

ସେଇ ମାତୃହରା ଶିଶୁଟି ଆଜି ପିତାର ଆଦର ଯତ୍ନ ଓ ସ୍ନେହ ପାଇ ବଡ଼ ହୋଇ ଉଠିଛି—ସେ ଆଜି ଯୁବକ । ଯୌବନ ସାଗରର ଉଦ୍ଦାମ ତରଙ୍ଗ ଆଜି ତା'ର ବୁକୁ ଭିତରେ ବୋହି ଚାଲିଛି, କିନ୍ତୁ ତେବେ ମଧ୍ୟ ଯୌବନର ଶତ ଆନନ୍ଦର କଳ କୋଳାହଳ ମଧ୍ୟରେ ଯେପରି ତା'ର ସ୍ୱର୍ଗୀୟା ମା'ର ସ୍ମୃତି ଗୁଡ଼ିକ ଜାଗି ଉଠେ ମୁହୂର୍ତ୍ତିକ ପାଇଁ—ତା'ର ଚିନ୍ତାଧାରାରେ । ଟିକିଏ ଦୁଖର ଆଘାତରେ ତା'ର ପ୍ରାଣ ବ୍ୟଥିତ ହୋଇ ଉଠେ—ସେ ଛୁଟି ଯିବାକୁ ଚାହେଁ ତା'ର ମା'ର ସ୍ନେହମୟ କୋଳରେ ଟିକିଏ ସାନ୍ତ୍ୱନା ପାଇବାକୁ ।

ରାତିରେ ସେ ସେଇ ପର୍ଣ୍ଣକୁଟିରଟି ଭିତରେ ସ୍ୱପ୍ନ ଦେଖେ—ସେ ଯେପରି ଚାଲିଯାଇଛି ଏକ ନୂତନ ଅଜଣା ଦେଶକୁ—ତା'ର ମାଆର ସନ୍ଧାନ ପାଇଁ । ଚାଲିଛି ସେ ଏକମୁହାଁ ହୋଇ କେତେଦୂର ପଥ ଅତିକ୍ରମ କରି । କେଡ଼େ ସୁନ୍ଦର ସେଇ ଦେଶଟା, କେଡ଼େ ମଧୁର ତା'ର ସୌନ୍ଦର୍ଯ୍ୟ । କିନ୍ତୁ ସେଠାରେ ଜନମାନବର ଦର୍ଶନ ନାହିଁ । କେବଳ ସେ ଏକାକୀ ଚାଲିଛି ଏକ ଅସୀମ ପଥରେ । ପଥ ମଧ୍ୟରେ ଯେପରି ହଠାତ୍ କେହି ଆସି ଦଣ୍ଡାୟମାନ ହୁଏ ତା'ର ସମ୍ମୁଖରେ । ସେ ପଚାରି ବୁଝେ, ଯେ ସେ ହେଉଛନ୍ତି ସେଇ ଦେଶର ଦେବତା—ହର୍ତ୍ତାକର୍ତ୍ତା !

ଦୁହିଁଆ କାନ୍ଦ ପକାଇ କହେ, ହେ ଦେବତା, ମୋ ମା'କୁ ଥରେ ବୋଲି ଦେଖାଇ ଦିଅ । ମା'ର ସନ୍ତାନ ହୋଇ ମଧ୍ୟ

ମା'କୁ ମୁଁ ଚିହ୍ନି ପାରିଲି ନାହିଁ । କେବଳ ଥରେ ମାତ୍ର··· । ତୁମେ ଏଡ଼େ ନିଷ୍ଠୁର କାହିଁକି ? କେତେଦୂରରୁ ମୁଁ ଧାଇଁ ଆସିଛି କେବଳ ଥରେ ମାତ୍ର ମୋ ମା'କୁ ଦେଖିବି ବୋଲି । ଶରୀର ମୋର ଶ୍ରାନ୍ତକ୍ଳାନ୍ତ ! ଥରେ ବୋଲି ଦେଖାଇଦିଅ ମା'କୁ ମୋର—ମୋ ମା କୋଳରେ ଥରେ ବୋଲି ବସିବାକୁ ଦିଅ ଦେବତା !—

ଦେବତା କଣ୍ଠରୁ ବଜ୍ରଗମ୍ଭୀର-ସ୍ୱରରେ ଉତ୍ତର ଆସେ, "ନାହିଁ, ନାହିଁ ସେ କଥା ହୋଇପାରିବ ନାହିଁ, ବାବୁ ! ତମ ପାଇଁ ଏ ରାଜ୍ୟ ନୁହେଁ ।" ଦୁଖିଆ କାନ୍ଦି କାନ୍ଦି ଦେବତାର ଗୋଡ଼ତଳେ ପଡ଼ିଯାଇ କହେ, ଜାଣେ, ଜାଣେ ଦେବତା—ସବୁଜାଣେ ! ତେବେ କୁହଭଲା, କାହିଁକି ମୋର ମାଆକୁ ତମେ ନେଇ ଆସିଲ ? ଯଦି ତମର ଆଇନରେ ଏଇଆ ଥିଲା, ତେବେ ମୋତେ ସେତେବେଳେ ଡାକ କଲ ନାହିଁ କାହିଁକି ? ଆଜି ତାହା ହେଲେ କାହିଁକି ମା'ର ସ୍ନେହ ଆଦରର ସ୍ମୃତିଗୁଡ଼ାକ ମୋର ଆଖି ଆଗରେ ନାଚୁଛି ?

ପହଡ଼ କିଆ ବାଲିଆ 'ହୁକେ-ହୋ' କରି ଡାକ ଉଠେ । ସହସା ନିଦ ତା'ର ଭାଙ୍ଗିଯାଏ । ସେ 'ହୁଁ' କରି ଦେଙ୍ଗାଟା ଦେହରେ ହାତ ପକାଏ । ଆଖି ଦି'ଟା ମଳି ମଳି କୁଣ୍ଡିଆ ଦୁଆର ମୁହଁ ର ନିଆଁମୁଣ୍ଡାଟାକୁ ଦି'ଥର ଫୁଙ୍କିଦେଇ, ହାତଦି'ଟା ଦେଖାଇ ବସିଯାଏ । ସ୍ୱପ୍ନର ନିଶା ସେତେବେଳେ ସୁଦ୍ଧା ତାହାର କଟି ନ ଥାଏ । ଅତୀତ-ଭବିଷ୍ୟ ସବୁ କଥା ମନେ ପଡ଼ି ମନଟା ତା'ର ବିଦ୍ରୋହୀ ହୋଇ ଉଠେ ।

ତା'ପରେ—

ସେଥର ହେଲା ଏକ ଭୀଷଣ ତୋଫାନ ଆଉ ବନ୍ୟା । ତାର ଫଳରେ କେତେ ଘରଦ୍ୱାର ଯେ ଭାଙ୍ଗି ନଷ୍ଟ ହୋଇଗଲା—କେତେ ଲୋକ ଆଉ କେତେ ଗୃହପାଳିତ ପଶୁ ଯେ ଚିରଦିନ ପାଇଁ ପୃଥିବୀ-ପୃଷ୍ଠରୁ ଲିଭିଗଲେ ତା'ର କଳନା ନାହିଁ । ଚତୁର୍ଦ୍ଦିଗରେ କେବଳ ହାହାକାର ଧ୍ୱନି । ଖାଦ୍ୟସାମଗ୍ରୀ ଯାହା ଥିଲା ସବୁ ବତାସ ଆଉ ବନ୍ୟାର ଦାଉରେ ନଷ୍ଟ ହୋଇଯାଇଛି । ଜନସେବା ଅନୁଷ୍ଠାନ-ମାନଙ୍କର ସାହାଯ୍ୟରୁ କେହି ବା ଓଳିଏ ଖାଇବାକୁ ପାଉଛି, ପୁଣି କାହାରି ଭାଗ୍ୟରେ ତା ବି ଯୁଟୁ ନାହିଁ । ସେତେବେଳେ ନିଜର ସଂସାରର କଥା ଭୁଲିଗଲେ ସଭିଏଁ—କେବଳ ଆପଣାକୁ ନେଇ ସଭିଏଁ ବ୍ୟସ୍ତ । ସମୟ ସେତେବେଳେ ଛୁଟି ଚାଲିଥାଏ—ଅସଂଖ୍ୟ ନରନାରୀଙ୍କର ଆର୍ତ୍ତନାଦ ଆଉ ଅଭିଶାପ ବୁକୁରେ ଧରି ମହାକାଳର ସ୍ରୋତ ମୁଖରେ ।

ମାଧବ ନଶୀଥ ଅନନ୍ତ ପ୍ରଭୃତିର ଅନେକ ସ୍ୱର୍ଣ୍ଣରେ ବାପପୁଅ ଦି'ଜଣ ଦି' ଆଡ଼କୁ ବାହାରି ପଡ଼ନ୍ତି ମଜୁରି ପାଇଁ—କେହି ବଦାନ୍ୟ ଧୁନ୍ଧିପତି କୌଣସି କାମ ତାଙ୍କଠୁଁ କରାଇ ନେଉ କିଛି ଦିଅନ୍ତି, ତାଙ୍କର ଅକ୍ଳାନ୍ତ ହାଡ଼ଭଙ୍ଗା ଖାଟଣୀର ବିନିମୟରେ ! କିନ୍ତୁ ହାୟ, ବୃଥା ହୋଇଯାଏ ସମସ୍ତ ଶ୍ରମ ତାଙ୍କର ! ତାଙ୍କର କଳନା ମନ ଭିତରେହିଁ ମିଳାଇ ଯାଏ ! ସେମାନେ ଯେ ସର୍ବ-ହରା ! ତାଙ୍କଠୁଁ କାମ ନେବ କିଏ ?

ଆପଣା ଜୀବନର ମାୟା ନିକଟରେ, କର୍ତ୍ତବ୍ୟର ମୂଲ୍ୟ ଯେ କେତେ ଟିକିଏ ଭାବି ଠିକ୍ କରି ହାୟ !

ଏକ ଅନ୍ଧକାର ରାତ୍ରିରେ ଦୁଖିଆ ତା'ର ସ୍ନେହମୟ ପିତାଙ୍କୁ ଏକାକୀ ନିଃସହାୟରୂପେ ଛାଡ଼ି କର୍ତ୍ତବ୍ୟର ସମସ୍ତ ବନ୍ଧନ ଛିନ୍ନ କରି ଛୁଟିଗଲା ଦୂରକୁ—ଅନ୍ୟ ଏକ ଗ୍ରାମକୁ । ସେହି ଗାଁର ଗଉନ୍ତିଆ ଘରେ କେବଳ ଖାଇବା ପିନ୍ଧିବାର ବନ୍ଦୋବସ୍ତ ଏକ ବନ୍ଧା ମୂଲିଆର କାମ ପାଇଲା—ଠିକ୍ ଆଫ୍ରିକାର କ୍ରୀତଦାସ ପରି ।

ସେଇଦିନରୁ ଶୀତଦିନର ସମସ୍ତ ରାତି ଧାନଖେତ ଜଗିବା ତା'ର ପ୍ରଧାନ ଧର୍ମ ହୋଇ ଉଠିଲା । ସେଥର ଧାନ ଫସଲ ଭଲ ହୋଇଥାଏ, ଆଉ ଖେତ ମଝିରୁ ଧାନ ବି ଚୋରି ହେଉଥାଏ ଖୁବ୍ । ସେଥିପାଇଁ ଗଉନ୍ତିଆଙ୍କର ତାଗିଦ୍ ଥାଏ ଯେ ଯଦି ତାଙ୍କ ଖେତରୁ ଧାନ ଚୋରି ଯାଏ ତାହା ହେଲେ ଦୁଖିଆର ପିଠି ଜାଣିବ କି ତାଙ୍କର ବେତ ଜାଣିବ ।

ପଲାକୁଡ଼ିଆଟି ଭିତରେ ଶୋଇ ଶୋଇ ତା'ର ପୂର୍ବ ଘଟଣା ଗୁଡ଼ିକ ଗୋଟିଏ ଗୋଟିଏ କରି ତା'ର ମନ ଆଗରେ ଖେଳିଉଠେ । କ୍ଷୋଭ, ଅଭିମାନ ଆଉ ଘୃଣାରେ ସେ ନିଜେ ନିଜ କାନ୍ଦିଉଠେ । ମନେ ପଡ଼ିଯାଏ ତା'ର ଝୁମ୍ପୁଡ଼ି ଶୋକାତୁର, ଅସହାୟ ପିତାଙ୍କୁ । କେତେ ନିଃସହାୟଭାବରେ ସେ ତାଙ୍କୁ ଛାଡ଼ି ଆସିଛି,—ଯେ ଦିନେ ତା'କୁ ଜୀବନ ସଂଗ୍ରାମ ଭିତର ଦେଇ ବଞ୍ଚାଇ ମଣିଷ କରି ଆଣିଥିଲା । ଆଜି ସେ ଯୁବକ ପୁଣି କର୍ତ୍ତବ୍ୟ ନିକଟରେ ନିଜର ଜୀବନକୁ ବଡ଼ କରି ଦେଖିଛି ।

ଏହି ସବୁ ଚିନ୍ତା ତନ୍ଦ୍ରାରେ ତା'ର କିଛି ହୁଏ ନାହିଁ । ରାତିରେ ଗଭୀର ଅନ୍ଧକାର ମଧ୍ୟରେ ଯେତେବେଳେ ସମସ୍ତେ ନିଦ୍ରିତ, ଦୁଖିଆ ସେତେବେଳେ ଗ୍ରାମ ପ୍ରାନ୍ତରର ପଲା କୁଡ଼ିଆ ଭିତରେ କ୍ଳାନ୍ତ-ଶୋଯ

ଉପରେ ଭୂତ-ଭବିଷ୍ୟତ-ବର୍ତ୍ତମାନ ଚିନ୍ତାରେ ମଗ୍ନ । ନିଦ ଭିତରେ ମଧ୍ୟ ସେ ଶାନ୍ତି ପାଏନାହିଁ—ତାହାର ଭିତରେ ମଧ୍ୟ ସେ ଦେଖେ ସେହି··· ।

ସେତେବେଳେ ଦଶମୀର ଜହ୍ନ ବୁଡ଼ି ଯାଇଥାଏ । ଧୀରେ ଧୀରେ ଅନ୍ଧକାର ଘନେଇ ଆସୁଥାଏ । ହଠାତ୍ ଦୂରରୁ ଲକ୍ଷ୍ୟ ପଡ଼େ ତା'ର—ଦେଖେ, ସେଇ ଘୁପି ଘୁପି କିଆ ଅନ୍ଧାର ଭିତରେ ଦି'ଟି ଅସ୍ପଷ୍ଟ ଛାୟା ଧାନ ଖେତ ଭିତରେ ଧୀରେ ଧୀରେ ଦୂରକୁ ଚାଲି ଯାଉଛନ୍ତି । ଅପଲକ ଦୃଷ୍ଟିରେ ସେ ଚାହିଁ ରହେ ତାଙ୍କର ଆଡ଼କୁ—ଲକ୍ଷ୍ୟ କରେ ତାଙ୍କର ଗତିବିଧିକୁ । ପ୍ରଥମେ ଭାବେ, କେହି ଏତ ଆଗ ଗାଁକୁ ଯାଉଛନ୍ତି ବିଲ ଗହୀର ରାସ୍ତା ଦେଇ । କିନ୍ତୁ ସେ ଧାରଣା ତା'ର ଚାଲିଯାଏ, ଯେତେବେଳେ ସେ ଦେଖେ ସେଇ ଛାୟାମୂର୍ତ୍ତି ଦି'ଟି ଫୁସ୍ ଫାସ୍ କଥାବାର୍ତ୍ତା ହେଉଛନ୍ତି ଓ ଧାନକ୍ଷେତ ମଧ୍ୟରେ ସନ୍ଦେହଜନକ ଗତିବିଧି କରୁଛନ୍ତି । ପୁଣି କେତେବେଳେ କେମିତି ଖସ୍ ଖସ୍ ଶବ୍ଦ ଶୁଭୁଛି ।

କଥା କ'ଣ ? ଏହି ରହସ୍ୟମୟ ବ୍ୟାପାର ଦେଖିବା ପାଇଁ ବୁଢ଼ିଆ ଠେଙ୍ଗାଟାକୁ ଶକ୍ତ କରି ହାତ ମୁଠା ଭିତରେ ଧରି କୁଡ଼ିଆ ଭିତରୁ ବାହାରେ ଗୋଟାଏ ବିଲ ହୁଡ଼ ତଳେ ବସିଗଲା । ଦେଖିଲା ସେହି ଛାୟା ମୂର୍ତ୍ତି ଦି'ଟି କ୍ରମେ କ୍ରମେ ତାହାରି ଆଡ଼କୁ ଅଗ୍ରସର ହେଉଛନ୍ତି, ଆଉ ମଝିରେ ପାଚିଲା ଧାନଶୀଷ ଗୁଡ଼ିକ କାଟି ବୋହି ଭିତରେ ଭର୍ତ୍ତି କରୁଛନ୍ତି । ବୁଢ଼ିଆର ଆଉ ବସି ରହିବାର ଧୈର୍ଯ୍ୟ ରହିଲା ନାହିଁ—ଠେଙ୍ଗାଟା ମୁଣ୍ଡ ଉପରକୁ ଉଠାଇ ଧାଇଁଗଲା ସେମାନଙ୍କ ଆଡ଼କୁ । ମାତ୍ର ମଝିବାଟରେ ଧକ୍‌କା ଖାଇଲା ପରି ଚମକି ଛିଡ଼ା ହୋଇଗଲା—ମୁହଁରୁ ତାହାର ବାହାରି ଆସିଲା,—ଏଁ,

ଏ ଯେ ମୋର ବାବା । ଦେହଟା ଯାକ ତା'ର ବରଡ଼ା ପତ୍ର ପରି ଥରି ଉଠେ,—ଠେଙ୍ଗାଟା ହାତରୁ ଖସି ପଡ଼େ ।

ଥରେ ଭାବେ—ଫେରିଯିବ ସେ । ନା,ତାହା ହେ ହୋଇ ପାରିବ ନାହିଁ, ସେ ଯେ ତା'ର ମୁନିବର ଲୁଣ ଖାଇଛି । ଏପରି ବିଶ୍ୱାସଘାତକତା କରିବ କିପରି ? ଠେଙ୍ଗାଟା ଭୂଇଁ ଉପରୁ ଉଠାଇ ଶକ୍ତ କରି ପୁଣି ଧରେ, ଆଗକୁ ବଢ଼ି ଗୁଲିଯାଏ—ସେମାନଙ୍କ ଆଗରେ ତାଠ ଆଗୁଳି ଛିଡ଼ାହୁଏ ।

ବାପ ପୁଅର ଦୃଷ୍ଟି କ୍ଷଣକ ପାଇଁ ଏକ ହୋଇଯାଏ—ଦହିଙ୍କ ଆଖିରୁ ଝରିପଡ଼େ ଶ୍ରାବଣର ଧାରା । କାହାରି ପାଟିରୁ କଥା ବାହାରେ ନାହିଁ—ନୀରବତାର ସ୍ପନ୍ଦନ ବିସ୍ତାର କରେ ।

ଦୁଖିଆର ବାପ ମୁଣ୍ଡର ବୋଝ ଆଉ ହାତର ଦାଆ ବିଲ ଭିତରକୁ ଫୋପାଡ଼ି ଦେଇ ଚିତ୍କାର କରି କାନ୍ଦି ଉଠେ—ଆଉ ଦୁଖିଆକୁ ତା'ର ଛାତି ଭିତରେ ଜାବୁଡ଼ି ଧରେ ଶିରାବହୁଳ କମ୍ପମାନ ଦୁର୍ବଳ ହାତ ଦୁଇଟିରେ । ଦୁଖିଆ ଉଚ୍ଛ୍ୱସିତ ହୋଇ କାନ୍ଦି ଉଠେ —ବାବା !—

...ହଁ, ହଁ, —ମୂର୍ଖଟାରେ, ତୋର ବାପ ମୁଁ । ଚୋରିକରି-ବାକୁ ଆସିଥିଲି—ନିଜର କାଙ୍ଗାଳ ପେଟ ପାଇଁ ଦି'ମୁଠା ଯୋଗାଡ଼ କରିବାକୁ—ଧରା ପଡ଼ିଛି ପୁଣି ନିଜର ପୁଅ ପାଖରେ । ଅପମାନ-ଠାରୁ ମୋର ଆନନ୍ଦ ବେଶୀରେ ଆଜ ! ହଜିଯାଇଥିବା ମୁକ୍ତି ଯେ ମୋର ଛାତି ଭିତରେ ଫେରି ପାଇଛି । ଗୁଲ, ଗୁଲ ବାବା— ଆମକୁ ନେଇ ଗୁଲ୍ ତୋର ଖାଉନ୍ଦ ପାଖକୁ, ଚୋର ବୋଲି

ପୋଲିସ ହାତରେ ଧରାଇ ଦେ··· ! ପାପର ପ୍ରାୟଶ୍ଚିତ୍ତ ହେବ ସେଇ ଜେଲ ଭିତରେ—ଦୁଇବେଳା ଦୁଇମୁଠା ଖାଇବାକୁ ପାଇବୁଁ — ତୋର କର୍ତ୍ତବ୍ୟ ମଧ୍ୟ ଶେଷ ହେବ ସେଇଠି···! ଚାଲ, ଚାଲ ବାବା··· ! ବୁଢ଼ା ଅଉ କହିପାରେ ନାହିଁ; ଥରି ଥରି ବସି ପଡ଼େ ଝଲର ସେଇ କାକର ଭିଜା ହିଡ଼ ଉପରେ । ଦୁଖିଆର ଠେଙ୍ଗା ଖଣ୍ଡିକ ମଧ୍ୟ ଥରି ଥରି ଖସି ପଡ଼େ ତାହାର ପାଖରେ ।

ଦୁଖିଆ ନିର୍ବାକ୍ ନିସ୍ପନ୍ଦ ହୋଇ ଛିଡ଼ା ହୋଇ ରହେ—ଉପରକୁ ଚାହିଁ । ଆଖି ବୁଜି ପୁଣି ଥରେ ଦେଖିଯାଏ ତା'ର ଅତୀତ ଜୀବନର ଘଟଣାବଳୀ ।

ଏତିକିବେଳେ ପହରିକିଆ ବାଲୁଆ ପୁଣି ହୋବାଳି ଛାଡ଼େ- "ହୁଟିକି-ହୋ, — ହୁଟିକି-ହୋ··· !"

## ଝରାଫୁଲ

ଠିକ୍ ପାହାଡ ତଳରେ, ଶ୍ୟାମଳ ବନାନୀର ଅନ୍ତରାଳରେ—ଯକ୍ଷ୍ମା ହାସ୍ପାତାଳ 'ଇଟ୍‌କି ସେନାଟୋରିୟମ୍ ।' ବିହାର, ଓଡ଼ିଶା ସରକାର ବହୁତ ଭାବିଚିନ୍ତି ସଭ୍ୟ ଜଗତର ଅନ୍ତରାଳରେ ଏହି ଓରାଂ ଓ ମୁଣ୍ଡାଙ୍କ ଦେଶରେ ତାଙ୍କର ଦାନ ଟିକକ ଦେଇଛନ୍ତି—ରୋଗ ଜଗତର ଚରମ ଶାସ୍ତିରେ ପ୍ରପୀଡ଼ିତ ନିସ୍ପନ୍ଦ ପ୍ରାଣ ନିମନ୍ତେ । ଚାରି ପାଖରେ ବଣ—ଆଉ ପାହାଡ଼, କେବଳ ପ୍ରକୃତିର ବିଶାଳ ଶ୍ୟାମଳିମାରେ ଶ୍ୟାମଳାୟମାନ । ପାଖରେ ଇଉକ୍ୟାଲିପ୍ଟାସ୍ ଗଛ ଉପରୁ ଯେତେବେଳେ କାପ୍ତା ଚଢ଼େଇଟିଏ ଡ଼ାକି ଉଠେ—ରୋଗୀ ପ୍ରକୃତିସ୍ଥ ହୋଇ ଝରକା ଦେଇ ବାହାରକୁ ଚାହେଁ, ମୁହୂର୍ତ୍ତିକ ପାଇଁ ତା'ର ଦୃଷ୍ଟିପଥରେ ଏକ ସବୁଜ ଲହରୀ ଖେଳିଯାଏ । ରୋଗୀ କ୍ଷଣିକ ସାନ୍ତ୍ୱନା ପାଏ—ପୁଣି ପର ମୁହୂର୍ତ୍ତରେ ରୋଗର ଦାରୁଣ ଯନ୍ତ୍ରଣାରେ ତା'ର ମୁହଁରେ ଏକ ବିକୃତ ଭଙ୍ଗୀ ଖେଳିଉଠେ—ତା'ର ସେ ସବୁଜ ଲହରୀଟିକ ଏକ ଦାରୁଣ ସାହାରାର ବକ୍ଷରେ ଲିଭିଯାଏ । ଆଖି ଦୁଇଟି ତାର ଏକ ଅନାଗତ ଆଶଙ୍କାରେ ସଜଳ ହୋଇ ଉଠେ ।

ଝରଧନ । ବେଳ ବାରଟା ସଟିକ ହୋଇ ଯାଇଥାଏ । ବାହାରେ ସେତେବେଳେ ଝଞ୍ଜା-ପବନ ତା'ର ପ୍ରଳୟ ନୃତ୍ୟର

ଛାଦରେ ନାଚି ନାଚି ଗୁଳି ଯାଉଥାଏ । ମଧ୍ୟାହ୍ନ ପଥ୍ୟ ଖାଇସାରି ଅନେକ ରୋଗୀ ଏକ ଅଜଣା ମାଦକତାର ଆବେଶରେ ଆଖିବୁଜି ଶୁଅନ୍ତି । ପ୍ରଣବ ତା'ର ୱାର୍ଡ଼ରେ ଶୋଇଛି ପ୍ରତିଦିନର ଚିର-ଆକାଂକ୍ଷିତ ପରି । ଆଜକୁ ପ୍ରାୟ ଦ'ବର୍ଷ ହେବ ସେ ଏହି ହାସ୍ପାତାଳରେ ଭର୍ତ୍ତି ହୋଇଛି । ଏହା ମଧ୍ୟରେ ଜୀବନର କେତେ ହା-ହୁତାଶମୟ ବ୍ୟର୍ଥ ଆଶା ନେଇ କେତେ ରୋଗୀ ଆସିଛନ୍ତି—ଆଉ କେତେ ରୋଗୀ ଆରୋଗ୍ୟ ଲାଭ କରି ଚିରଆକାଂକ୍ଷିତ ପ୍ରିୟ-ଜନଙ୍କ ମଧୁର ପରଶ ପାଇବା ପାଇଁ ଛୁଟି ଯାଇଛନ୍ତି—ପକ୍ଷୀଗୁଡ଼ିକ ପରି ।...ପ୍ରଣବ କିନ୍ତୁ ତା'ର ୱାର୍ଡ଼ରେ ସବୁଠାରୁ ପୁରୁଣା—ସବୁ ଯୁଗର ଆଶା ତା'ର ମଉଳି ଯାଇଛି, ପୋକକଟା ଦରଫୁଟା ବଣ-ମାଲତୀ ଫୁଲଟି ପରି । ପ୍ରଣବର ଆଖିରେ ତନ୍ଦ୍ରାର ପଲକ ନାହିଁ—ଦୁନିଆଯାକର ବିକ୍ଷିପ୍ତ ଚିନ୍ତାସବୁ ମାନସପଟରେ ଖେଳିଉଠି ବୁକୁତଳେ ତା'ର ବିରାଟ ଉର୍ମିମାଳାର ନର୍ତ୍ତନ ଖେଳାଉଥାଏ । କାନ୍ଥରେ ଝୁଲା ହୋଇଥିବା ଘଡ଼ିର ଟିକ୍-ଟିକ୍ ଶବ୍ଦ ସାଥିରେ ନିଜର ହୃତ୍‌ପିଣ୍ଡର ସ୍ପନ୍ଦନ ମିଳାଇ ଦେଖେ—ବେଳେ ବେଳେ ନିଜ ଦେହରେ ନିଜେ ହାତ ପକାଇ ଶରୀରର ଉଷ୍ମତା ଅନୁଭବ କରେ,—ଆଉ କେବଳ ଆଖିବୁଜି ପଡ଼ିଥାଏ—କାହାରି ଆଡ଼କୁ ଚାହେଁ ନାହିଁ । ...ଠିକ୍ ଏହିପରିଭାବରେ ଦିନ ପରେ ଦିନ, ରାତି ପରେ ରାତି, ଗୋଟିଏ ଗୋଟିଏ ହୋଇ ସୃଷ୍ଟିଚକ୍ରର ଘୂର୍ଣ୍ଣନପଥରେ ଯାତ୍ରୀ ହୁଏ । ଭିଜିଟିଂଟାଇମ୍ ବେଳେ ସେ ମନେ ମନେ ଅତୀତ ସ୍ମୃତି-ଭଣ୍ଡାରର କବାଟ ଫିଟାଇ ଭାବେ ଅନେକ କଥା...ତାହା ଅଜାଣତରେ ହୁଏତ ପଞ୍ଜରା ହାଡ଼ ଦ'ଖଣ୍ଡି ଦୋହଲାଇ ବାହାରିପଡ଼େ ଏକ ତପ୍ତ ଦୀର୍ଘନିଃଶ୍ୱାସର ତେଜ । କାହାରି ଆଡ଼କୁ ଦୃଷ୍ଟି ମଧ୍ୟ ଦିଏ ନାହିଁ ସେ । ରୋଗୀ, ରୋଗୀ ପରିଜନଙ୍କ ଗହଳରେ ହାସପାତାଳ ମୁଖରି-

ବେଳେ ଚଞ୍ଚଳ ଓ ମୁଖର ହୋଇ ଉଠେ···ପ୍ରିୟଜନଙ୍କର ଆଶ୍ୱାସବାଣୀ ପାଇ ହତାଶ ରୋଗୀର ପ୍ରାଣରେ ମଧ୍ୟ ଆଶାର କ୍ଷୀଣ ଦୀପଶିଖା ଜଳିଉଠେ । ପ୍ରଣବ ହୁଏତ ନର୍ସର ଖିଆଲରେ ନିଜେ ଟିକିଏ ହସେ, ପୁଣି ନୀରବ ଲେଉଟାଇ ଶୁଏ । ଆତ୍ମୀୟ ସ୍ୱଜନଙ୍କ ପାଖରୁ ବହୁ ଦୂରରେ ଆସି ସେ ପଡ଼ିଅଛି ଏହି ଦୁରନ୍ତ ଓରାଂ ଓ ମୁଣ୍ଡାଙ୍କ ଦେଶରେ । ତାର ଦୁଃଖରେ ସମବେଦନାର ସୁରରେ 'ଆହା' କରିବା ପାଇଁ ମଧ୍ୟ କେହି ନାହିଁ—ଏଠାରେ । କେବଳ ନର୍ସର ଉଦାସୀନ ସେବା ତା' ନିକଟରେ ପରମ ପ୍ରୀତିକର ବୋଲି ମନେ ହୁଏ ।

ଆଜିକୁ ତିନିଦିନ ହେଲା ପ୍ରଣବର ବେରାମ ଟିକିଏ ବଢ଼ି-ଉଠିଛି । କାଶ ସଙ୍ଗେ ସଙ୍ଗେ ମେଞ୍ଚା ମେଞ୍ଚା କାଳିଆ ରକ୍ତ ପଡ଼ିବା ଦେଖି ପ୍ରଣବ ଟିକିଏ ଡରିଯାଇଛି । ଡାକ୍ତର ଦୁବେଳେ ଦେଖି ଯାଉଛନ୍ତି । ନର୍ସର ଭୀତିପ୍ରଦ କରୁଣ ଚାହାଣୀ, ଡାକ୍ତରର ମ୍ଳାନମୁଖ ଦେଖି ପ୍ରଣବ ବୁଝିପାରୁଛି ଯେ ତା'ର ଜୀବନ-ପଥ ଓ ପାଥେୟ ଦୁଇଟିଯାକ ଏକାବେଳେକେ ଶେଷ ହୋଇ ଆସିଛି । ଶ୍ୱାସ ନେବାକୁ ମଧ୍ୟ କଷ୍ଟ ହେଉଛି ଆଜି,—ଆଖି ଦୁଇଟା ଧୀରେ ଧୀରେ ନିଷ୍ପ୍ରଭ ହୋଇଉଠୁଛି । ···ପଲକ ଗଲ ଯେ ବେଲକୁବେଲ ଶୁଷ୍କ ହୋଇଆସୁଛି ।

ଅନେକ ବିନୟ କରି କାଲି ସନ୍ଧ୍ୟା ପରେ ଗୋଟିଏ ନର୍ସ ନିକଟରୁ ପ୍ରଣବ ଖଣ୍ଡିଏ କାଗଜ ଓ ପେନ୍‌ସିଲଟିଏ ଯୋଗାଡ଼ କରିଥିଲା । ତା'ର ପରମ ସାଥୀ, ପ୍ରାଣର ପ୍ରଣୟିନୀ ଉଷା ନିକଟକୁ ଶେଷ ଚିଠିଖଣ୍ଡି ମଧ୍ୟ ଲେଖି ରଖିଛି । ଏତେଦିନ ଯାହା ତା'ର ଅନ୍ତରର ଗଭୀର ପ୍ରଦେଶରେ ଏକ ବିରାଟ ଆସନ ମାଡ଼ି ବସିଥିଲା, ଆଜି ତାହାହିଁ

ବ୍ୟକ୍ତ ହୋଇ ଫୁଟି ଉଠିଛୁ ସାଦା କାଗଜ ଉପରେ ପେନ୍‌ସିଲର କଳାଗାରର ବଙ୍କିମ ଛନ୍ଦରେ । କପରି ଭାବରେ ଏହା ଚିଠିକି ସେ ପଠାଇବ ଉଷା ନିକଟକୁ କାଲି ସାଗ୍ରସ୍ତ ଉଲ୍ଲାଗର ରହୁ ତାହାରି ଚିନ୍ତା କେବଳ କରିଛୁ ।

ଧୀରେ ଧୀରେ ତକିଆ ତଳୁ ଚିଠିଟି ବାହାର କରି ପୁଣି ସେ ପଢ଼ିଗଲା ଥରେ—

ଇନ୍‌କ ସେନାଟୋରିୟାମ୍
( ରାଞ୍ଚି )
ତା ୭।୪।୪୦

ହୃଦୟସ୍ୱାମିନୀ ଉଷା ମୋର,

ନୂତ ଭାବେ ତୁମ କତକ ଚିଠି ଲେଖିବ—କାରଣ, ବୁଝି-ପାରିଛୁ ଜୀବନଦୀପ ମୋର ଧୀରେ ଧୀରେ ନିଭି ଆସୁଛୁ···କାଲିଠୁ ଶରୀର ବଡ଼ ଖରାପ ଲାଗୁଛୁ । ଡାକ୍ତରମାନଙ୍କ ଉଦାସ ଦୃଷ୍ଟି, ନର୍ସର ସତର୍କ ପ୍ରଶ୍ନ ତତ୍ପରତା ଦେଖି ବୁଝିପାରୁଛୁ ଯେ ଏଇ ଦୁଇ ଚାରିଦିନ ମଧ୍ୟରେ ମୋର ଏହି ଦେହ-ପିଞ୍ଜରର ପ୍ରାଣ-ପକ୍ଷୀ ଉଡ଼ି ଚାଲିଯିବ । ଅନେକ କଷ୍ଟରେ ଅନୁନୟ ବିନୟ କରି ଏହି କାଗଜଖଣ୍ଡିକ ଆଣିଛୁ । ତୁମରି ନିକଟରେ ମୋର ଅନ୍ତରର ଅନ୍ତିମ ଭାଷା ଜଣାଇ ନ ପାରିଲେ ମରଣ ପରେ ମଧ୍ୟ ମୁଁ ଶାନ୍ତି ପାଇପାରିବି ନାହିଁ । ଅନେକ ଚିଠି ତୁମକୁ ଲେଖିଛୁ ଉଷା !—ବ୍ୟାକୁଳ ନୟନର ଅଶ୍ରୁଜଳରେ ସେ ସବୁ ଭିଜି ଛିଡ଼ିଯାଇଛୁ, ତେବେ ମଧ୍ୟ ତାକରେ ଦିଆ ହୋଇନି । ଆଜି ମୋର ମନ-ମୁକୁର ସମ୍ମୁଖରେ ଅତୀତର ସମସ୍ତ ଛବି ପ୍ରତିଫଳିତ ହୋଇ ଉଠୁଛୁ । ମନେ ଅଛୁ, ଏକ ଶରତର

ସନ୍ଧ୍ୟାରେ ଶେଫାଳିର ମାଳା ଗୁନ୍ଥି ନେଇ ଯାଇଥିଲି — ତୁମରି କବରୀରେ ବାନ୍ଧି ଦେବ ବୋଲି, ଶେଫାଳି ଫୁଲ ତୁମର କେଡ଼େ ଆଦରର ବସ୍ତୁ ନ ଥିଲା ! ଟିକିଏ ସୁବିଧା ପାଇଲେ ପରା ଛୁଟି ଆସୁଥିଲ ଆମ ବଗାକୁ—ମୋରି ହାତଧରି ଟାଣି ନେଇ ଯାଉଥିଲ ଶେଫାଳି ଗଛ ତଳକୁ ଆଉ ଠିକ୍ ମୋରି କୋଳକୁ ଲାଗି ବସି ପଡୁଥିଲ ପକା ବେଦୀ ଉପରେ ! ମାତ୍ର ସେ ଦିନ,—ସେହି ବର୍ଷା ଧୌତ ଜ୍ୟୋତ୍ସ୍ନା-ଉଦ୍ଭାସିତ ସନ୍ଧ୍ୟାରେ ତୁମର କବରୀରେ ଫୁଲର ମାଳା ଦେବାକୁ ଯାଉଥିଲି, ହଠାତ୍ ତମର ପିତାଙ୍କର ନିର୍ମମ ବାଣୀ ଭାସି ଆସିଲା··· ଯାହା ଶୁଣି ତମର ସୁନ୍ଦର ମୁହଁଟି ଲଜ୍ଜାରେ ଲାଲ ହୋଇଗଲା—ମୁଁ ପାଞ୍ଚପାଦ ପଛକୁ ଘୁଞ୍ଚିଗଲି । ଫୁଲରମାଳା ମୋର ହାତରେ ରହିଗଲା ପ୍ରେମ ପ୍ରତିମାର ପୂଜାରେ ଲାଗି ପାରିଲା ନାହିଁ ।···

ତମର ପିତାଙ୍କର ମୁହଁରେ ସେହି କର୍କଶ ଓ ଅସୁନ୍ଦର କଥା ଶୁଣି ମୁଁ କ'ଣ କରିବି କିଛି ଠିକ୍ କରି ପାରିଲି ନାହିଁ । ତା'ପରେ କେତେଦିନ ବିତିଗଲା— ତମରି ମୁହଁରୁ କଥା ଦି'ପଦ ଶୁଣିବି ଏହି ଆଶାକୁ ହତାଶ ପ୍ରାଣର ସମ୍ବଳରୂପେ ରଖି ପ୍ରତୀକ୍ଷାରେ ଦିନ କଟାଇଲି । ତୁମ ସାଥିରେ ଦେଖା ବା କଥା ହେବାର କୌଣସି ସୁଯୋଗ ବା ସୁବିଧା ଖୋଜି ପାଇଲି ନାହିଁ । ତା'ପରେ ଦିନେ ଭୋରରୁ ତମେ ତମ ସାନ ଭାଇ ବାବୁ ସାଥିରେ ଚନ୍ଦ୍ରତୀର୍ଥର ବେଳାଭୂମିରେ ଶାମୁକା ଗୋଟାଉଥିଲ—ସେଇ ଅବସରରେ ମୁଁ ଧାଇଁ ଯାଇଥିଲି ତମ ନିକଟକୁ— ସେ ଦିନ ମଧ୍ୟ ମୋର ହାତରେ ଥିଲା ରଜନୀଗନ୍ଧାର ଗୁଚ୍ଛ—ସେ ଦିନ ନିଜେ ତମେ ମୋର ହାତରୁ ଫୁଲର ଗୁଚ୍ଛଟି ନେଇ ଖୋସି ଦେଇଥିଲ ତମର ସୁନ୍ଦର ଓ ଘନକୃଷ୍ଣ କବରୀରେ । ମୁଁ ଯେତେବେଳେ ତମର ହାତ ଦୁଇଟି ଆଣି

ମୋର ଶର-ପିପାସିତ ଅଧରତଳେ ସ୍ପର୍ଶ କରାଇଥିଲ ସେତେବେଳେ ତମେ ମୋର ବୁକୁଭିତରେ ମୁହଁ ଲୁଚାଇ ଅଶ୍ରୁନିର୍ଝରରେ ବୁକୁ ମୋର ଭିଜାଇ ଦେଇଥିଲ ! ସେଦିନ ମୋର କୌଣସି ପ୍ରଶ୍ନର ଦରକାର ହୋଇ ନ ଥିଲା । ତମର ରଜନୀଗନ୍ଧା-ମଣ୍ଡିତ କବରୀ ଆଉ ଆଖିପତା ତଳର ଅଶ୍ରୁବିନ୍ଦୁ, ସେଇଥିରେ ମୁଁ ମୋର ସମସ୍ତ ପ୍ରଶ୍ନର ସ୍ବତଃପ୍ରଣୋଦିତ ଉତ୍ତର ପାଇ ପାରିଥିଲି ।

ତୁମର ପିତାଙ୍କୁ ଅନେକ ବୁଝାଇଛି । ସମାଜର ବନ୍ଧନ ଓ ନିୟମ ଦେଖାଇ ସେ ମୋର ସବୁଯାକ ଯୁକ୍ତି କାଟିଦେଲେ — ତାଙ୍କ ନିକଟରେ ମୋର କୌଣସି ଯୁକ୍ତି ନିଶ୍ଚିତେକ ଛିଡ଼ା ହୋଇ ପାରିଲାନି । ଅଜା ଦୀର୍ଘ ପାଞ୍ଚବର୍ଷ ହେଲା, — ମୋର ସେହି ଝାଉଁବଣ ଭିତର ‘ନନ୍ଦନ-ନିଳୟ’କୁ ଛାଡ଼ି ଗୁଲିଆସିଛି । ଅନେକ ପ୍ରକାର ଚେଷ୍ଟା କରିଛି ତୁମକୁ ଭୁଲିଯିବାକୁ ଇଚ୍ଛା,— କିନ୍ତୁ କାହିଁକି, ଜାଣେ ନାହିଁ ଜୀବନର ଧୂଳି-ଧୂଷର ମରୁପଥରେ ନିର୍ବାପଣୋନ୍ମୁଖ ଜୀବନ-ପ୍ରଦୀପର ଶେଷ ଶିଖା ନିକଟରେ ମଧ୍ୟ ତୁମରି ଛବି ଦେଖିପାରୁଛି — ଭୁଲି ପାରିଲେ ନାହିଁ···ଜୀବନର ଏ ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା । ଏ ଶରୀର ମନର ସବୁ କଳକବ୍ଜା ଯେପରି ବିଗିଡ଼ି ଯାଇଛି । ଠାଠା କମ୍ପାନୀର କାରଖାନା କାମ, ନିଆଁର ଗରମ ଆଉ ଚିମିନିର ଧୂଆଁ ମୋ ସୁକୁମାର ଶରୀରରେ ଆଦୌ ସହ୍ୟ ହେଲା ନାହିଁ··· ସୁଯୋଗ ପାଇ ଅନେକ ପ୍ରକାର ରୋଗ ଯେଉଣୁ ଆସି ଆଶ୍ରୟ ନେଇଛି ! ବଡ଼ା ! ଅଜା ତମରି ବିରହ ଅଉ ତମରି ଚିନ୍ତା ମୋର ଗୁରିଆଡ଼େ ଖେଳି ବୁଲୁଛି । ମୁଁ ଜାଣେନା, ତମ ହାତରେ ଏ ଚିଠି ପହଞ୍ଚିବ କି ନା — ଯଦି ପହଞ୍ଚେ ତେବେ ଜାଣିଥାଅ ତାର ପୂର୍ବରୁ ମୁଁ ଅନ୍ୟଜଗତକୁ ଗୁଲି ଯାଇଥିବି । କେହି ଜାଣି ପାରିବେ ନାହିଁ

ଯେ ପ୍ରଣବକୁମାର ଏ ଜଗତରୁ ଖୁନ୍ଦ୍ଦିଗଲେ, କାରଣ ମୁଁ ନିଜକୁ ଅନ୍ୟ ଏକ ନାମରେ ପରିଚିତ କରାଇଛି—ନିରୁଦ୍ଦେଶ ହୋଇଯାଇଛନ୍ତି । ମୃତ୍ୟୁ ପୂର୍ବରୁ ତୁମର ଖବରଟିକି ଜାଣିବା ପାଇଁ ବଡ଼ ଆଗ୍ରହ ଥିଲା । ଗୋଟିଏ ପ୍ରଶ୍ନ କୌଣସି ପ୍ରକାରରେ ମୋର ଅଗ୍ରହାତିଶଯ୍ୟରୁ ଉତ୍ତର ଦେଇ ପାରୁନ—"ବାହା ହୋଇଛ ତ ?" ଯଦି ନ ହୋଇଥାଅ, ତେବେ ମୋର ଏକାନ୍ତ ମିନତି—ତୁମେ ବିବାହ କରି ସୁଖୀ ହୁଅ ଉଷା ! ଆଜି ମୋତେ କ୍ଷମା କରି ଭୁଲି ଯାଅ,—ଭୁଲି ଯାଅ !" ବର୍ତ୍ତମାନ ମୃତ୍ୟୁ ମୋ ନିକଟକୁ ଯେଉଁ କରାଳ ମୂର୍ତ୍ତି ନେଇ ଅସିଲ ମଧ୍ୟ—ତୁମର କ୍ଷମା ମୋର ପରଜନ୍ମର ଶ୍ରେଷ୍ଠ ସମ୍ପଦ ହୋଇ ରହିବ । ହଉ,—ଉଷା ! ଦୁଃଖ କରିବ ନାହିଁ । ଦୁଃଖ କରିବାର ତ କିଛି ନାହିଁ… ।

ଏଇ ପର୍ଯ୍ୟନ୍ତ ପଢି ପ୍ରଣବ ଏକ ଅବ୍ୟକ୍ତ ବ୍ୟଥାରେ ଝାଉଁଳି ପଡ଼ିଲା—ଏବଂ ତା' ସାଥିରେ କାଶ ସହିତ ଝଲକାଏ ତାଜା ରକ୍ତ ବାହାରି ଆସିଲା । କୌଣସି ପ୍ରକାରରେ ଦମ୍ ନେଇ ଇଙ୍ଗିତରେ ନର୍ସ୍‌କୁ ତା' ନିକଟକୁ ଆସିବାକୁ ସଙ୍କେତ ଦେଇ ତା'ର ଶିଥିଳ ହାତ ଦୁଇଟିରେ ଝିଅଟାକୁ ଭିଡ଼ି ଧରିଲା ।

ନର୍ସ୍ ପାଖକୁ ଆସି ତା'ର ବିକ୍ଷିପ୍ତ ବାଳଗୁଡ଼ିକ ଅଙ୍ଗୁଳି ଦ୍ୱାରା ସଜାଇବାକୁ ଲାଗିଲା । ପ୍ରଣବ ତା'ର କ୍ଷୀଣଦେହଟିକୁ କୌଣସି ପ୍ରକାରରେ ଟିକିଏ ସଜାଡି ନେଇ ସଜଳ ନୟନରେ କହିଲା—"ଶତ ଧନ୍ୟବାଦ ଅପଣଙ୍କୁ—ମରଣ ବେଳରେ ମଧ୍ୟ ଅପଣଙ୍କ ମମତାପୂର୍ଣ୍ଣ ସ୍ନେହ କରସ୍ପର୍ଶରେ ପ୍ରକୃତରେ ବଡ଼ ତୃପ୍ତି ପାଉଛି… ଅପଣଙ୍କୁ ଆଜି ଗୋଟିଏ କାମ କରିବାକୁ ହେବ । ମୋର ଚିର-ବିଦାୟର ଶେଷ ନିବେଦନ ଅପଣଙ୍କୁ ରଖିବାକୁ ହେବ—ଏଇ

ଚିଠିଟି······ଏତିକି କହି ମିନତିପୂର୍ଣ୍ଣ ଦୃଷ୍ଟିରେ ନର୍ସକୁ ସେହି ଚିଠିଟି ଦେଲା । ନର୍ସ୍ ଚିଠି ଖଣ୍ଡି ହାତକୁ ନେଇ ଦେଖିଲା, ଚିଠିର କଭର୍‌ରେ ଲେଖାଅଛି—

କୁମାରୀ ଉଷାରାଣୀ ଦେବୀ
C/o. ଜୟଗୋବିନ୍ଦ ମହାପାତ୍ର
'ସାଗର-ବିତାନ'—ଚକ୍ରତୀର୍ଥ, ପୁରୀ

ନର୍ସ୍ ହଠାତ୍ ଭୀତ ଓ ତ୍ରସ୍ତ ହୋଇ ପଛକୁ ଫେରି ଦେଖିଲା ପ୍ରଣବର ଦେହଟା ନିଶ୍ଚଳ ଓ ଅଚେତନ ହୋଇ ପଡ଼ିଅଛି—ନାକ ପୁଡ଼ାରୁ ଗୋଟିଏ କ୍ଷୀଣ ରକ୍ତଧାର ବୋହି ଆସୁଛି । ଘଡ଼ିରେ ସେତେବେଳେ ଛ ନଟା ।

ନର୍ସ୍ ଚିଠିଖଣ୍ଡିକ ହାତରେ ଧରି ଠିଆହୋଇ ରହିଲା—ଅର୍ଥଶୂନ୍ୟ ଦୃଷ୍ଟିରେ ଉପରକୁ ଚାହିଁ । ହଠାତ୍ ଆଖିରୁ ତା'ର ଅଶ୍ରୁ ବନ୍ଧ ଭାଙ୍ଗି ବକ୍ଷଦେଶ ଭସାଇ ବୋହିଗଲା—ଅଜାଣତରେ ତା' ପାଟିରୁ ବାହାରି ଆସିଲା···'ରମେ' 'ଚାଲିଗଲ !' କିଛିକ୍ଷଣ ପରେ 'ଆଃ' କହି ଗଛ କାଟିଲା ପରି ନର୍ସ କରୁଡ଼ି ହୋଇ ପ୍ରଣବର ଶଯ୍ୟା ପ୍ରାନ୍ତରେ ପଡ଼ିଗଲା—ସଂଜ୍ଞାହୀନା ହୋଇ ! !

ଠିକ୍ ସେତିକିବେଳେ ଦୂରରୁ କେଉଁଠି ଏକ ଓରାଂ ଯୁବକର କ୍ଷୀଣ ସ୍ଵର କଣ୍ଠରୁ କରୁଣତର ହୋଇ ପବନ ସୁଅରେ ଭାସି ଆସୁଥାଏ ··ପିଁ···ଇଁ···ଇଁ···।

---

# ଭଗ୍ନନୀଡ

ଚାଇଁବସା ସହରର ସୀମାନ୍ତରେ 'ରଡ଼' ନଈଟି ବୋହି ଯାଉଅଛି ଶିଳା-ବନ୍ଧୁର ଦେହ ଉପରେ—ଗାଠେଲ ଗାଠେଲ ନାଚ ନାଚ, ଠିକ୍ ନର୍ତ୍ତନ-ରତା 'ହୋ' ତରୁଣୀର ସୁନିୟନ୍ତ୍ରିତ ପଦର ଛନ୍ଦ ପରି ! ନାଲି ସଡ଼କଟା ସହରରୁ ବାହାରି ଠିକ୍ ଓଡ଼ିଆ ସ୍କୁଲ ପାଖ-ଦେଇ ତା'ର ବୁକୁ କାଟି ଚାଲିଯାଇଛି—ହାଟକୁ । ଦୁଇ ପାଖରେ ତା'ର ସବୁଜ ଧାନ କ୍ଷେତ—ଆଉ କେଉଁଠି ହୁଡ଼ା ମଝିରେ ଗୋଟିଏ ଦୁଇଟି କାଶଫୁଲର ଗୁଚ୍ଛ !—ତା ମଧ୍ୟ ଧୀର ବତାସର ସୁଅରେ ହଲି ହଲି ଉଠୁଥାଏ । ସାମନାରେ ନେଳା ପାହାଡ଼ଟା ଠିଆ ହୋଇଛି ଆକାଶକୁ ମୁଣ୍ଡଟେକ ।

ନଈ ଅପାଖରେ ଠିକ୍ ସଡ଼କ କରକୁ ଖଣ୍ଡିଏ ଉଚ୍ଚଟ ହୋ-ପଲ୍ଲୀ । ସେଇ ପଲ୍ଲୀରେ ଶାରଦୀରଘର । ଅଖପାଖ ଗାଁ ଭିତରେ ସେଇ ଥିଲା ସବୁଠୁ ସୁନ୍ଦରୀ । ତରୁଣୀ ପରି ତା'ର ଦୁଇଟି ଠଣାଠଣା ଅକ୍ଷି । ତା'ର ସେଇ ଅଖି ଦୁଇଟିକୁ ଚାହିଁଲେ—ଯେପରି ତା'ର ଅନ୍ତରଟାପାକ ଫୁଟି ଦେଖାଯାଏ—ଶାରଦୀ ଥିଲା ଭାରି ଚଞ୍ଚଳା । ସବୁବେଳେ ସେ ତା'ର ଚଞ୍ଚଳତାରେ ଭରପୂର । ଗୋଟିଏ ମୁହୂର୍ତ୍ତ ମଧ୍ୟ ସେ ଶାନ୍ତ ହୋଇ ବସିପାରେ ନାହିଁ । କେବଳ ତା'ର ବାପ, ଧନିଆ ମୁଣ୍ଡା ଯେତେବେଳେ ସହରର ଜଙ୍ଗଲ ବାବୁ

ଘରୁ କାମ ସାରି ଫେରେ—ସେତିକବେଳେ କିଏ ଯେପରି ତାକୁ ଜୋର କରି ଶାନ୍ତ କରାଏ ।

ପୋଢ଼ୁଅ ଭିତରେ କାହୁଆ ଗଞ୍ଜାଟା ଯେତେବେଳେ ପହିଲ 'କେ-କେ-ରେ...କେ...' ବୋଲି ଡାକଦିଏ—ସେତିକବେଳୁ ଶାବିତୀ ପଡ଼ିଆରୁ ଉଠି ତା' କାମରେ ଲାଗିଯାଏ । କାଳିଆ ହାଣ୍ଡି ଖଣ୍ଡିକ ପୋଛିପାଛି ପଖାଳ ଗଣ୍ଡାକ ସିଆଡ଼ ପଲଙ୍ଗାରେ ପଡୁଆ ବାନ୍ଧି ଦିଏ । ବାଡ଼ ପଛରୁ କଞ୍ଚା ଲଙ୍କା ଦୁଇଟା ତୋଳିଆଣି ଲୁଣ ଟିକିଏ ସାଥିରେ ପତର ଖଣ୍ଡିକରେ ସୁଲୁଙ୍ଗା କରି ପଡୁଆ ଭିତରେ ଗେଞ୍ଜି ଦିଏ । ସବଗି ପତରରେ ଦୋକତା ମେଞ୍ଚେ ନେଇ ଗୋଟାଏ କାହାଳିଆ ନଳି ପଡୁଆ ପାଖରେ ରଖିଦେଇ ଘର ବାହାର ଖଣ୍ଡିକ ଝାଡ଼ି ପକାଏ । ଫେରସ୍ତ ହେଉଁ ହେଉଁ ବାପ ତା'ର ଉଠି ମୁହଁ ଭିତରେ ଦାନ୍ତକାଠିଟା ଦ'ଗୁଡ଼ିଏ ଥର ବୁଲାଇ ଦେଇ ମୁହଁଟା ଧୋଇ ପକାଏ—ମାଠିଆଟାରେ ମାଠିଏ ହାଣ୍ଡିଆ ପିଇ କାହାଳିଆଟା ଅଣ୍ଟାରେ ଖୋସି ପଡୁଆଟାକୁ ହାତରେ ଓହଳାଇ କାମକୁ ବାହାରି ଯାଏ । ଶାବିତୀ ଗୁହିଁ ରହେ ସେଇ ନାଲି ସଡ଼କଟାକୁ । ବାପ ତା'ର ନଇ ଭିତରେ ଲୁଚିଗଲେ, ଲୁଗାଟା ଅଣ୍ଟାରେ ଭିଡ଼ିଦେଇ ଝୁଣ୍ଟା ପାଛିଆ ଖଣ୍ଡିକରେ କଂସା ଦ'ଖଣ୍ଡି ପକାଇ କଲସୀଟାଏ କାଖରେ ଟେକି ବାହାରିପଡ଼େ ନଈକୁ । ନଈରୁ ଫେରି ନେଇ କାଳିଆ ହାଣ୍ଡିଟାରେ ପାଣି ମୂନ୍ଦାଏ ଢାଳି ଗୁଡ଼ଲା ଦିଓଟି ସିଝାଇ ପକାଏ । ସେତିକବେଳେ ମାଆକୁ ତା'ର ମନରେ ପଡ଼ିଯାଏ । ଆଖି ଦୁଇଟି ଟିକିଏ ଟଳ ଦିଏ । ମା' ତା'ର ଦୁଇ ବର୍ଷ ହେଲା ସବୁ କାମର ଭାର ଏଇ ଦଶବର୍ଷର ଝିଅଟି ଉପରେ ଲଦିଦେଇ ପାଖ ପଡ଼ିଆ ଗଛ ମୂଳରେ ଚିରଦିନ ପାଇଁ ଲୁଚି ଯାଇଛି । ସେଇ ଗଛ

ମୂଳରେ ଗୋଟିଏ ବଡ ପଥର ଆଡକୁ ଶାରଦୀ ଜଳ ଜଳ କରି ଚାହିଁ ରହେ !

ଶାରଦୀର ଘର ସାମନାରେ ଧାନ କିଆରି । ସେଇ କିଆରିର ହିଡ ମୁଣ୍ଡରେ ମନୁଆ ଯେତେବେଳେ ଲଙ୍ଗଳଟା କାନ୍ଧରେ ପକାଇ ହଳଅ ଦି'ଟା ଅଡାଇ ନଇ ଆଡ଼କୁ ଚାଲିଯାଏ—ଶାରଦୀ ତାକୁ ବାଡ଼ ବାଉଁଶ ତାଟି ଫାଙ୍କରୁ ଦେଖେ । ଦେହଟା ତା'ର କାହିଁକି ଅଜାଣତରେ ନାଚ ଉଠେ । ବାହାରଆଡୁ କବାଟ ଶିକୁଳିଟା ଲଗାଇ ଦେଇ ସେ ମନୁଆର ପଛ ଧରେ । ମନୁଆ ଗୋରୁ ଦି'ଟା ନଈକୂଳକୁ ଅଡାଇ ଦେଇ ଲଙ୍ଗଳଟା କାନ୍ଧରୁ ଓହ୍ଲାଇ ପଥର ଉପରେ ଯାଇ ବସେ—ଗୋଡ଼ ଦି'ଟା ପାଣି ଉପରେ ଖେଳାଇ ଖେଳାଇ । ଶାରଦୀ ଚୁପ୍ ଚୁପ୍ ଯାଇ ଛିଡ଼ା ହୁଏ ମନୁଆର ପଛରେ ପଥରକୁ ଲାଗି । ମନୁଆ ସେଇ ଦେଉଳ ପାହାଡ଼ଟା ଆଡ଼କୁ ଚାହିଁ ଗାଏ 'ଜଗତ ପାଳ ନକାଶି ହେ ଭଗବାନ, କରୁଣାନିଦାନ...' । ଠିକ୍ ତା'ର ଗୀତ ସରିଲାବେଳକୁ ଶାରଦୀ ପଛ ପାଖରୁ ଚମକି ଦେଇ 'ହିହି' କରି ହସି ଉଠେ—ମନୁଆ ଚମକି ପଡ଼େ ।

"ମନୁଆ"—

"ଶାରଦୀ"—

"କଣ ?"—

"ତୁ ଭାରି ଦୁଷ୍ଟ !"

"ହଁ...ଭାରିତ ! ସବୁ କାମ ଛାଡ଼ିଦେଇ କେବଳ ତୋ ସାଥିରେ ଦି'ପଦ କଥା ହେବାକୁ ଦଉଡ଼ି ଆସିଲି ମୁଁ ହେଲି ଦୁଷ୍ଟ ! ଆଉ ତୁ..."

ମନୁଆ ଶାରଦୀ ମୁହଁରେ ହାତ ଦେଇ ତାକୁ ଅନ୍ତର ପାଖକୁ ଟାଣିନଏ । ମୁଣ୍ଡର ଅଳସ ବାଳଗୁଡ଼ିକ ଆଉଁଳୁ ଆଉଁଳୁ ତାକୁ ଛାତି ଉପରକୁ ଆଉଜାଇ ନେଇ କହେ—"ଅଚ୍ଛା ଶାରଦୀ କହନା, ତୁ କାହିଁକି ମୋତେ ଦେଖିଲାକ୍ଷଣି ଛୁଟିଆସୁ ଏମିତି ? ତୋ ବାବାର ତ ଆମେ ଦୁଷ୍‌ମନ୍ ! ସେଥିରେ ତୁ କାହିଁକି ଏତେ ଭାବ ରଖୁଛୁ ମୋ ସାଥିରେ ?"

ଶାରଦୀ ତା' କୋଳରେ ମୁଣ୍ଡ ରଖି କହେ—"ସତରେ ମନୁଆ ତୋତେ ଦେଖିଲେ ମୋତେ କାହିଁକି ଭାରି ଆନନ୍ଦ ଲାଗେ ତୋ ସାଥିରେ ନାଚିବାକୁ ମନ ହୁଏ । ତୋର ସେଇ ଟେଉଁ ଉଡ଼ିଆ ଗୀତଟା ତ ମୋତେ ପାଗଳ କରିଦଏ । ତୋର 'କସ୍'ରେ (ସ୍ୱର), ମୋତେ କପାଇଁ ତୋର ପାଖ ଛାଡ଼ିବାକୁ ମନ ହୁଏନାହିଁ । ଚାକ ଦେଖ, ତୋର ବାବା ଯେପରି ମୋ ବାବା ନିକଟରେ ଏକଥା ନ କହେ,—ତା ନ ହେଲେ ବାବା ମୋତେ ହାଣି ଦ'ଖଣ୍ଡ କରିଦେବ । ଭାରି ରାଗୀ ମଣିଷ ସେ—ତୁମର ଉପରେ ତା'ର ରାଗ ଅନ୍ତରେ ବେଶୀ, ଜାଣୁ ତ ? ପୁଣି ସେଇ ବଙ୍ଗାଳୀବାବୁଟା ଶିଖାଇ ଦେଇଛନ୍ତି ଯେ ତୁମେ ଉଡ଼ିଆ ଘରେ କାମ କର, ଉଡ଼ିଆ ପଢ଼ି ଜାତି ମାରିଛ—ଓଡ଼ିଆ ହୋଇଛ,—ଆଉ ଆମେ ବଙ୍ଗାଳୀ ।—ତୁମେ ଆମର ପକ୍‌କା ଦୁଷ୍‌ମନ ! ଅଚ୍ଛା ମନୁଆ, ତୋର ବାବା ଆଉ ମୋର ବାବା ଏତେ କଳି କରନ୍ତି କାହିଁକିରେ ? ଆମ ଭିତରେ ତ କେଶ୍ ଭାବ ଅଛି ।"

ମନୁଆ ଏ ସବୁ କଥା ଶୁଣି ନ ଶୁଣିଲା ପରି ଧୀରେ ଧୀରେ ଏକ ଦୀର୍ଘ ନିଶ୍ୱାସ ଟାଣି କହେ,—"ଶାରଦୀ, ତୋତେ ଦେଖିଲେ ମୁଁ ଦୁନିଆର ସବୁ ଝଲମଳ ଭୁଲିଯାଏ ରେ । ମନେହୁଏ କେବଳ

ତୋର କୋଳଭିତରେ ମୁଣ୍ଡ ରଖି ଯୁଗ ଯୁଗ ଧରି ସପନ ଦେଖେ ଶୋଇ ରହନ୍ତି ଛବି । ସତରେ ଶାରଦୀ, ତୋର ଏ ଝଣା ଝଟା ଆଖି ଦ'ଟାକୁ ଗୃହିଁଲେ ସବୁ ଦୁଃଖ ପାଶୋରି ଯାଏଁ ମୁଁ ।''

ଶାରଦୀ ଏ ସବୁ କଥାର ଅର୍ଥ ବୁଝିପାରେ ନାହିଁ । କେବଳ ହସରେ ଭୁଲାଇ ଦିଏ ମନୁଆର ବ୍ୟର୍ଥତା—ଆଉ ତାକୁଇ କେନ୍ଦ୍ର କରି କେତେ କଳ୍ପନାର ଜାଲ ବୁଣିଯାଏ ।

ମନୁଆ କୋଡ଼ିଏ ବାଇଶ ବର୍ଷର ଯୁବକ । ଗଲବର୍ଷ ଓଡ଼ିଆ ସ୍କୁଲରୁ ଅପାରପ୍ରାଇମେରି ପାଶ୍ କରିଛି । ବଳିଷ୍ଠ ଶ୍ୟାମଳ ଦେହଟା ମଧ୍ୟରେ କି ଅପୂର୍ବ ତା'ର ମୁହଁ, ଆଖିର ଜ୍ୟୋତି ! ବାପ ତା'ର ଭାରି ଭଲ ମଣିଷ । ବିପଦ ଆପଦରେ ପରର ଉପକାର କରିବା ତା'ର ଚିରକାଳର ସ୍ୱଭାବ । ଶାରଦୀର ବାପ ସାଥିରେ ମଧ୍ୟ ତା'ର ଭାବ-ଦୋସ୍ତି ଥିଲା ଖୁବ୍ । କିନ୍ତୁ ଯେଉଁଦିନୁ ସେ ନିଜ ପିଲାକୁ ଓଡ଼ିଆ ପଢ଼ାଇଲା ଆଉ ପାଖଆଖ ଗାଁର 'ହୋ' ପିଲାଙ୍କୁ ଓଡ଼ିଆ ପଢ଼ିବାକୁ ଶିଖାଇଲା—ପୁଣି ନିଜେ ଯାଇ ପଣ୍ଡିତ ଅଗ୍ନିହୀଙ୍କ ଘରେ କାମ କଲା—ସେଇଦିନୁ ଜମିଆ ମୁଣ୍ଡା ସାଥିରେ ତା'ର ଝଗଡ଼ା । ସେଇ ମହାନ୍ତର ଦିନେ ହଠାତ୍ ରୂପ ଧରି ଛୁଡ଼ାଦେଲା ସାମାନ୍ୟ ଟଗାଟିଏ ଧାନ ଦେଲେ ହୁଡ଼ା ପାଇଁ । ସେଦିନ ଦୁଇ ଜଣଙ୍କର କି ଭୀଷଣ କଳି ! ସେଇଦିନୁ ଏକ ଅଜ୍ଞାତ ଆଶଙ୍କାରେ ଶାରଦୀର ବୁକୁ ଭିତରଟା ଭୟଙ୍କର କମ୍ପି ଉଠେ ଦୁରୁ ଦୁରୁ ହୋଇ । କିଏ ଜାଣେ, ତାର ଜମିଦାର ବାପା ଯଦି ରାଗରେ ଗୋଟେ କାନ୍ଦୁଡ଼ ହେଇ ରକ୍ତପିପାସୁ ଝାଙ୍କି ଝା ଲାଗି ଝାସାଇ ଦିଏ ମନୁଆର ବାପର ଦେହ ଉପରେ !···ସେ ତା'ର ବାପକୁ ଭଲକରି

ଚଟେନି । ବାପ ତା'ର ଫେର ଚାହିଁଲେ ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ତା'ର ଭୟରେ ଶିହରି ଉଠେ ।

ଆଜି ରବିବାର । ଧନିଆ ଖାଇପିଇ ବାହାରି ଯାଇଛି ସହରରୁ ଦଶମାଇଲ ଦୂର 'ଜୋଡ଼ାପୋଖରୀ'କୁ ତା'ର ହାକିମ କାମରେ । ଆଜି ଫେରିବା ଅସମ୍ଭବ । ଯଦିବା ଫେରେ ତା ହେଲେ ଖୁବ୍ ଡେରିରେ ଫେରିବ—ପ୍ରାୟ ରାତିରେ ।

ଶାରଦୀର ମନ ଆଜି ବଡ଼ ବ୍ୟାକୁଳ ହୋଇଉଠିଲା । ସେ ଆଜି କେବଳ ମନୁଆକୁ ତା ନିକଟରେ ଚାହେଁ । ତା'ର ଗଭୀର ଦୁଃଖଭରା ଛଳ ଛଳ ଆଖି ଦୁଇଟି ମନୁଆର ଘର ଉପରେ କେତେ ଥର ଯେ ବୁଲି ଆସିଲାଣି—ତାର ଆଉ କଳନା ନାହିଁ । ମାତ୍ର ଆଜି ମନୁଆର ଘର କବାଟ ବନ୍ଦ । ଆଜି ପୁଣି ରବିବାର । ସେ ଆଜି ନିଶ୍ଚୟ ଯାଇଥିବ 'ଲୁଘୁଂଗୁଡୁ' ଝରକୁ ତା'ର ଲୁଗା ସଫା କରିବାକୁ । ଶାରଦୀର ମନ ଏଥର ଚଞ୍ଚଳ ହୋଇ ଉଠିଲା । ସେ ମଧ୍ୟ ଲୁଗା ଦି'ଖଣ୍ଡି ଧରି ଛୁଟି ଚାଲିଲା—'ଲୁଘୁଂଗୁଡୁ' ଝର ଉଦ୍ଦେଶ୍ୟରେ । ମଝି ରାସ୍ତାରେ ତାର ସ୍ମୃତିପଟରେ ଭାସି ଉଠିଲା ତା' ବାପର ରୁକ୍ଷମୂର୍ତ୍ତି ଆଉ କର୍କଶବାଣୀ,—ସେ ଦିନ ମନୁଆର ବାପକୁ ଲକ୍ଷ୍ୟ କରି କହୁଥିଲା—"ଫେର ଯଦି ତୋର ମନୁଆ ମୋର ଶାରଦୀ ସାଥିରେ ମିଶିଛି, ତେବେ ଜାଣି ରଖ, ମୋର ଠେଙ୍ଗାଟା ମନୁଆର ଗର୍ଦ୍ଦନଟାକୁ ତଳେ ଗଡେଇ ଦେବ ।" ମୁହୂର୍ତ୍ତିକ ପାଇଁ ତାର ପାଦର ଗତି ସ୍ଥିର ହୋଇଗଲା । ସେ ଉପରକୁ ଚାହିଁ କଣ ଭାବିଲା । ତାପରେ ସେ ତାର 'ମାରାଂ-ବୁରୁ' ନିକଟରେ ଆକୁଳ ପ୍ରାର୍ଥନା ଜଣାଇଲା,—"ହେ ଦେବତା, ବାବା ମୋର ଯେପରି ସନ୍ଧାନ ନ ପାଏ—ମୁଁ ଥରକ ପାଇଁ ମନୁଆକୁ ଦେଖିଆସେ ।"—ପାଗଳ ପରି ସେ

ଧାଇଁ ଗଲେ ସେହି ଘଣ୍ଟାଘର, କୁଞ୍ଜଘେରା 'ଲଭ୍-ଗୁଣ୍ଡ୍ୱିଭ' ଆଡ଼କୁ ।

ଚତୁର୍ଦ୍ଦିଗରେ ବୃକ୍ଷଲତାର ସମାବେଶ ସ୍ଥାନଟିକୁ ବେଶ୍ ସୁନ୍ଦରରୂପେ ସଜାଇ ଦେଇଛି । ନିକଟରେ କେଉଁଠି ତଳମୂଳରୁ ମାଟି ତରଳି ଖୁବ୍ ଜୋରରେ ଝର ଫୁଟି ବାହାରୁଛି । ସହରର ବଡଲୋକେ ସେଇଠି ପକା ବାନ୍ଧି ଝରମୁହଁରେ ନଳ ଖଞ୍ଜି ଦେଇ ଅଛନ୍ତି । ସେଇ ନଳ ଭିତରେ ଦେଇ ମୁଷଳଧାରରେ ପାଣି ଝରେ-ପଡୁଛି । ସାମନାରେ ଏକ ସୁସଜ୍ଜିତ ଫୁଲ ବଗିଚା—ସରକାର ତରଫରୁ ତିଆର ହୋଇଛି ସହରର ବାବୁମାନେ ବନଭୋଜି କରିବାକୁ ସମୟେ ସମୟେ ଏଠାକୁ ଆସନ୍ତି । ଠିକ୍ ସେଇଠି ପହଞ୍ଚିଲା ମାତ୍ରକେ ସହସା ତାର ବୁକୁଭେଦ କରି କିଏ ଯେପରି ଡାକିଲା—"ଶାର...", ...ଶାରଦୀ—ମୁଁ ତ ଏଇଠି । ମୂହୂର୍ତ୍ତକ ମଧ୍ୟରେ ଶାରଦୀ କୁଞ୍ଜ ଭିତରେ ଲୁଚିଯାଇ ମନୁଆର ଆବେଗ ପ୍ରସାରିତ ଭୁଜ ବନ୍ଧନରେ ବନ୍ଦୀ ହୋଇ ତାର ବୁକୁ ଉପରେ ଢଳି ପଡିଲା । ଧୀରେ ଧୀରେ ମନୁଆ ଶାରଦୀକୁ ତାର କୋଳ ଉପରେ ଶୁଆଇ ତାର ସୁନ୍ଦର ମୁଖମଣ୍ଡଳ ଉପରେ ବିକ୍ଷିପ୍ତ ବାଳଗୁଡ଼ିକୁ ସଜାଡ଼ିବାକୁ ଲାଗିଲା ।

—"ମନୁଆ !"

—"କଣ ?"

—"ମୁଁ ଯଦି ତୋ'ର କୋଳ ଉପରେ ଏମିତ ଶୋଇ ରହି ମରି ଯାଆନ୍ତି ତାହାହେଲେ ବେଶ୍ ଭଲ ହୁଅନ୍ତା, ନାହିଁ ?

ମନୁଆର ଆଖି ଦୁଇଟି ଛଳ ଛଳ କରି ଉଠିଲା । ଦୁଇଟୋପା ତାତଲା ଲୁହ ଗଡ଼ିପଡ଼ିଲା ଶାରଦାର କପାଳ ଉପରେ । ଶାରଦା ତା'ର ପ୍ରିୟତମର ଅଶ୍ରୁର ତପ୍ତ ପରଶରେ ଚମକି ଉଠିଲା,—"ମନୁଆ, ତୁ କାନ୍ଦୁଛୁ ?"

ମନୁଆ ତା'ର ଅଶ୍ରୁ ସଜଳ ଦୃଷ୍ଟି ଶାରଦାର ଝଣା ଝଣା ଆଖି ଦୁଇଟି ଉପରେ ରଖି କହିଲା—କେତେଦିନ ପରେ ଆଜି ତୋତେ ଏକାକୀ ବୁକୁ ଉପରେ ପାଇଛୁ, ଶାର୍ଦ୍ଦି । ଆଜିପରି ଦିନରେ ତୁ ବ ମୋତେ କନ୍ଦାଇବୁ । ମୋର ଆଖିରେ ଲୁହ ଦେଖିଲେ ତୋତେ ଭାରି ଖୁସି ଲାଗେ, ନା ?"

ଶାରଦାର ଅନୁତପ୍ତ ପ୍ରାଣ ଗୁମୁରି ଗୁମୁରି କାନ୍ଦିଉଠିଲା—ପାଟିରୁ ତାର କଥା ବାହାରିଲା ନାହିଁ । ସତରେ ଥଟ୍ଟା କରିବାକୁ ଯାଇ ପ୍ରିୟତମକୁ ସେ ତା'ର ଦାରୁଣବ୍ୟଥା ଦେଇଛି !

ମନୁଆ ଶାରଦାର ମୁଣ୍ଡ ଉପରେ ହାତ ରଖି ଦୂରର ସେହି ନେଳି ପାହାଡ଼ଟା ଆଡ଼କୁ ଚାହିଁ ରହିଥାଏ—ସମ୍ମୁଖରେ ସବୁଜ ଧାନକ୍ଷେତ । ଦୂରରେ ମାଛରଙ୍କାଟାଏ ବିଲ ମଝିରେ କେଉଁଠି ତାର ଆହାର ଦେଖି ଥଣ୍ଟଟା ତଳକୁ ଦେଇ ଉଡ଼ି ବୁଲୁଥାଏ । ବେଳେ ବେଳେ ଗୋଟାଏ ଝାମ୍ପ ମାରି ପୁଣି ଉପରକୁ ଉଠି ଯାଉଥାଏ । ଦୂରରେ ନେଳି ଆକାଶତଳେ ଦୁଇଖଣ୍ଡି ଧଳା ରଙ୍ଗୀନ ମେଘ ଧୀରେ ଧୀରେ ଅଗ୍ରସର ହୋଇ ପରସ୍ପରକୁ ଚୁମ୍ବନ କଲେ—ତା'ପରେ ଦୁଇଟିଯାକ ଗୋଟିଏ ହୋଇ ଦୋହଲି ଦୋହଲି ଭାସି ଚାଲିଲେ— ଅସୀମ ପଥରେ··· । ବଗଟା ଡେଣା ଚହଡ଼େଇ ଆଖି ଆଗରେ ତାର ସେଇ ନେଳି ପାହାଡ଼ର ବୁକୁ ଉପର ଦେଇ ଉଡ଼ିଗଲେ ଆଡ଼ ଲୁଚିଗଲେ ଠିକ୍ ସେଇ ମେଘ ତଳରେ । ଅଜାଣତରେ ମନୁଆର

ବୁକୁ ଭିତର ସ୍ପନ୍ଦନଟା ଦ୍ରୁତ ହୋଇ ଉଠିଲା ।···ମେଘଖଣ୍ଡିକ ତା'ର ଦୃଷ୍ଟିପଥରେ ଭାସି ଚାଲିଥାଏ—ସେପଟ ହସି ଉଠୁଥାଏ ତା'ର ସାର୍ଥକତାର ମହାନନ୍ଦରେ··· ।

ଶାରଦୀ ଏତେବେଳକେ ତା'ର ବାହୁଲତାରେ ମନୁଆର ଗଳା ଭିଡ଼ିଧରି ପଚାରିଲା—"ସତ କହିଲ, ଏବେ କ'ଣ ଭାବୁଛ ?"

—ଦେଖୁଛ ନା, କି ସୁନ୍ଦର ଏହି ମେଘଖଣ୍ଡିକ ଉଡ଼ିଯାଉଛି । ଥିଲା ଦଇଁଠା, ଏବେ ଦୁଇଅଡ଼ୁ ଆସି ହେଲେ ଗୋଟାଏ···ତା' ପରେ କେମିତ ଆନନ୍ଦରେ ମାତାଲ ହୋଇ ଆପଣାକୁ ଭୁଲିଯାଇ ନାଚି ନାଚି ଉଡ଼ି ଯାଉଛନ୍ତି ।" ମନୁଆ ଶାରଦୀକୁ ତା'ର ଆହୁରି ନିକଟକୁ ଭିଡ଼ି ଆଣିଲା । ମନୁଆର କପାଳ ଉପରେ ଶାରଦୀର ଦୁଇ କେଶଗୁଚ୍ଛି ପବନର ହିଲ୍ଲୋଳରେ ଖେଳିଉଠିଲା । ତାର ନଗ୍ନବକ୍ଷର ଦ୍ରୁତ ସ୍ପନ୍ଦନ ମନୁଆର ବୁକୁତଳ ସ୍ପନ୍ଦନ ସହିତ ମିଶିଯାଇ ଦ୍ରୁତତର ହୋଇଉଠିଲା । ମନୁଆର ଆଖି ଆଗରେ ପ୍ରକୃତିର ଦୃଶ୍ୟ ଆଜି ଥରେ ଆଦର୍ଶ ହୋଇ ଖେଳିଉଠିଲା—ମୁହଁଟି ତାର ଶାରଦୀର ମୁହଁଉପରକୁ ଝୁଙ୍କି ପଡ଼ିଲା···ଦୁଇଟି ତୃଷାତୁର ଅଧର ଏକତ୍ରିତ ହେଲା— ଦୁଇଟି ବଞ୍ଚିତ ପ୍ରାଣ ଏକ ହେଲା ।

ସନ୍ଧ୍ୟାର ଅନ୍ଧକାର ସେତେବେଳ ସୁଦ୍ଧା ଘନାଇ ଆସିନାହିଁ— ଉଚ୍ଚବୃକ୍ଷର ଚୂଡ଼ାରେ ଅସ୍ତଗାମୀ ସୂର୍ଯ୍ୟର ରଙ୍ଗିନ୍ ତରଙ୍ଗ ଖେଳି ଉଠୁଥାଏ । 'ଶାରଦୀ' 'ଶାରଦୀ"—ଘନଆର ଡାକରେ ଗାଁଆଟି କମ୍ପି ଉଠିଲା—ବନଗଛର ଶୀଷରେ ଶୀଷରେ ତା'ର ପ୍ରତିଧ୍ୱନି ଖେଳିଗଲା । ଘର, ବାହାର, ନଈକୂଳଠୁ ଆରମ୍ଭ କରି ପାଖ ପଡ଼ୋଶୀ ଘରମାନଙ୍କରେ ଘନଆ ଖୋଜି ଆସିଲା ଶାରଦୀକୁ ତାର । ଦେଖିଲା

ଶାରଦୀର ଲୁଗା ଧରି ଟାଣିବାରୁ ଆଉ ମନୁଆକୁ ଧରିବା ବା କିଏ ଅଛି। 'ଆରେ ଆଜି ଏହି ଭାବରେ—ମନୁଆକୁ ଲୁଗା ସଫାକରିବାର ପାଳି।' ତା'ପରେ ହଠାତ ତା'ର ମନେ ହେଲା ଟାଙ୍ଗିଆର କଥା। ସେଇଟା ପାଇଁ ତ ସେ ବାଟ ଦୂର ଫେରି ଆସିଛି। ଏତେ ବାଟକୁ ଫିକ୍—ଲଟି ବଦଳରେ ସେଇଟା ହି ତା'ର ପ୍ରଧାନ ସଖା। ସେଇ-ଖଣ୍ଡିକ ନେବାକୁ ତ ସେ ଫେରିଛି କେବଳ। କଣେ ଭାବ ଧରେ ଠିଆ ହେଲା। ତା ପରେ କାନ୍ଧରୁ ଟାଙ୍ଗି ଖଣ୍ଡିକ ନେଇ ସେ ଛୁଟିଲା 'ଲୁପୁଂଗୁଡ଼ୁ' ଝରର ଆଡ଼କୁ ଶାରଦୀର ସନ୍ଧାନରେ।

'—ଶାରଦୀ !'

ମୁହୂର୍ତ୍ତିକେ ଦୁଇଜଣ କାମ୍ପି ଉଠିଲେ ଦେବାଅର ବିଷମ ଉତ୍ତେଜନାମୟ କଣ୍ଠସ୍ୱରରେ। ଭୁଜ ବନ୍ଧନ ଶିଥିଳ ହୋଇଗଲା ତାଙ୍କର। କଣ୍ଠସ୍ୱର ଅନୁସରଣ କରି ଆଖି ଫେରାଇବା ମାତ୍ରକେ ଶାରଦୀର ମୁହଁ ଶୁଖିଗଲା—ତାର ଦସ୍ୟୁପିତା ଦେହି ମନୁଆକୁ ଲକ୍ଷ୍ୟକରି ତା'ର ଟାଙ୍ଗି ଖଣ୍ଡିକ ଫିଙ୍ଗିଲା। 'ମନୁଆ 'ମନୁଆ ଶାରଦୀ ମନୁଆକୁ ପଛକୁ ଠେଲିଦେଇ ତା ଆଗରେ ଠିଆ ହୋଇଗଲା। ତୀକ୍ଷ୍ଣ ଟାଙ୍ଗି-ଖଣ୍ଡିକ ନିର୍ମମ କଠୋରତାରେ ଶାରଦୀର କୋମଳ ବୁକୁଟିକୁ ବିଦୀର୍ଣ୍ଣ କରି ବସି ରହିଲା। ତା'ପରେ ସବୁ ନିଶ୍ଚଳ, ନିସ୍ତବ୍ଧ !···କେବଳ ଦୁଇଟି [କଥା,-- 'ମନୁଆ—'ବାବା—ତା ପରେ ଶାରଦୀର କମ୍ପିତ ଅଧର ଦୁଇଟି ଚିରକାଳ ପାଇଁ ନୀରବ ନିସ୍ପନ୍ଦ ହୋଇଗଲା।

ସେତିକିବେଳେ ସେହି 'ଲୁପୁଂଗୁଡ଼ୁର' ନିସ୍ତବ୍ଧତା ବିଦୀର୍ଣ୍ଣ କରି ପାଲଛଡ଼ା ଚେଲୁଆଟାଏ ଡାକିଗଲା···କି···ରି ରି ରି—କି··· ଅ—ରି ରି ରି !

---

# ଘୃଣାର ଢେଉ

ବନ୍ଧୁଧନ ଭଲର କଥା ।

ସେଥର ସାଇକେଲରେ ସିଂହଭୂମି ବୁଲୁଥାଏ । ଦିନେ ଚକ୍ରଧରପୁରରୁ ସରାଇକଳା ଅଭିମୁଖରେ ଯାଉଥାଏ—ରାସ୍ତା ମଝିରେ ଜୁଟିଲା ଭୀଷଣ ଝଡ଼ ଆଉ ବର୍ଷା । ନିକଟରେ ଗୋଟିଏ 'ହୋ' ପଲ୍ଲୀ । ପଲ୍ଲୀ ପ୍ରାନ୍ତରରେ ଗୋଟିଏ ଛୋଟ 'ରେଷ୍ଟ ହାଉସ୍' । ସାଇକେଲ ନେଇ ରେଷ୍ଟ୍ ହାଉସ ବାରଣ୍ଡାରେ ଯାଇ ଉଠିଲି । ସେଠି ବଙ୍ଗଳାର ରକ୍ଷକ 'ହୋ' ଜାତିର ବୁଢାଟିଏ । ଖୁବ୍ ଭଲ ମଣିଷ । ମୋତେ ଆଦର କରି ନେଲା ଖୁବ୍ । ଖଣ୍ଡିଏ ଭଙ୍ଗା ଖପରାରେ ନିଆଁ ଜାଳି ଆଣି ଆସିଲା । ଖଣ୍ଡିଏ ଦଉଡି ଟାଙ୍ଗି ମୋ ଭିଜା ଲୁଗାପଟା ଦ'ଖଣ୍ଡ ଶୁଖାଇ ଦେଇ ମୋ ଖିଆପିଆର ବ୍ୟବସ୍ଥା କ'ଣ ହେବ ପଚାରି ଉତ୍ସୁକ ନୟନରେ ମୋତେ ଚାହିଁ ରହିଲା !

—"ମୋର ସେମିତି ବାଛ ବିଚାର ନାହିଁ, ମୁଁ ଯାହା ଦେବ ଖାଇବି ।"

ମୋ' ଠାରୁ ପାଖରୁ ଏତକ ଶୁଣି ବୁଢ଼ା ଏକାବେଳକେ ଚୁପ୍ କରି ରହିଲା । ତା'ପରେ ବେଳକେ କହିଲା—"ଆମ ଘରେ ଖାଇବେ ବାବୁ ? ଆମେ ସବୁ 'ହୋ' ଜାତି, ଆମ ହାତରେ କିପରି ଖାଇବେ ?"

ମୁଁ ତାର ଏ କଥା ପଦକ ଶୁଣି ବ୍ୟସ୍ତହୋଇ ପଡ଼ିଲି, କହିଲି ଅରେ ତମେ ମଣିଷ ତ ! ମୁଁ ନକଲି ମଣିଷ; ଏଣୁ ମୁଁ ମହିଷ ଜାତି ଭିତରେ ଅନ୍ତର ପାର୍ଥକ୍ୟ ଦେଖେ ନାହିଁ । ଯା ।” ବୁଢ଼ା ମଇଁଷି-ଟାର ମୁଣ୍ଡ ନୁଆଇଁ ଚାଲିଗଲା ।

ମୁଁ ବସି ବସି ପାଖରେ ଥିବା ଗୋଟିଏ ପୁରୁଣା ସମ୍ବାଦ ଧରି ତା ଉପରେ ଆଖି ବୁଲାଇ ଆଣୁଥାଏ । ଠିକ୍ ସେହି ସମୟରେ ଏକ ଶ୍ୟାମଳୀ 'ହୋ' ତରୁଣୀ ଆସି ପାଖ ଘରକୁ ଖାଇବାକୁ ଡାକିଲା । ସଲଜ କଣ୍ଠରେ କହିଲା—“ବାବୁ ଡେରି କରିବ ନାହିଁ ।”

ମୋତେ ଭୋକ ବି ଲାଗୁଥିଲା ଖୁବ୍ । ତେଣୁ ଆଗ୍ରହ ଥିଲେ ମଧ୍ୟ ତରୁଣୀଟି ସହିତ ଦି ପଦ କଥା ମଧ୍ୟ ହୋଇ ପାରିଲି ନାହିଁ । ତା ପଛେ ପଛେ ଯାଇ ଖାଇବାକୁ ବସିଗଲି । ଏଥର ପଚାରି ବୁଝିଲି ଯେ ସେ ହେଉଛି ବୁଢ଼ାର ଝିଅ ।

ପରଦିନ ସକାଳୁ ହେଇ ସୁନ୍ଦରୀଟି ଚା' ଆଣି ଟେବୁଲ ଉପରେ ଥୋଇଲା । 'ଚା' ଖାଇବା ଆଗରୁ ତା' ହାତରେ କିଛି ବକ୍‌ସିସ୍ ଗୁଞ୍ଜିଦେଲି । ପ୍ରକୃତରେ ସେତେବେଳକୁ ସେହି ମାତୃହୀନା ସରଳା 'ହୋ' ରମଣୀଟି ମୋ ପରି ଏକ ତରୁଣ ମନରେ ପ୍ରେମଠାରୁ ସହାନୁଭୂତିଟାକୁ ହିଁ ବିଶେଷ ରୂପେ ଜାଗ୍ରତ କରିପାରିଥିଲା ।

ଚା' ପାନାଦି ପରେ ପୁଣି ସାଇକେଲ ନେଇ ଚାଲିଲି ସରାଇକେଲା ପଥରେ ।

ତା' ପରେ ଅନେକ ବର୍ଷ ବିତିଯାଇଛି । ସଂସାରର ଦୁର୍ବିସହ ଦୁଃଖ କଷ୍ଟଗୁଳରେ ପଡ଼ି ସେହି 'ହୋ' ବୁଢ଼ାଟି କଥା ତା'ର ଫୁଲଠାରୁ ଗୋଲାପ ଫୁଲପରି ସୁନ୍ଦରୀ କନ୍ୟାଟିକୁ ଏକାବେଳକେ ଭୁଲି-ଯାଇଛି । ଆଜ ଠିକ୍ ମନେ ପଡୁନି, ହଠାତ୍ କାହିଁକି ପୁଣି ଥରେ ସେହି ରେଷ୍ଟ୍ ହାଉସ୍‌ରେ ରହିବାକୁ ପଡ଼ିଥିଲା ମୋତେ । ସେଦିନ ଦେଖିଲି ଅନେକ ପରିବର୍ତ୍ତନ ହୋଇଯାଇଛି, ଘରଗୁଡ଼ିକ ଜୀର୍ଣ୍ଣ ଅପରିଷ୍କାର ମନେ ହେଲା । ଯେପରି ଏକ ଶ୍ରୀହୀନ ଭାବ । ଠିକ୍ ପରେ ସେଇ 'ହୋ' ବୁଢ଼ାଟି ଆସି ପହଞ୍ଚିଲା । ପ୍ରଥମେ ବୁଢ଼ାକୁ ଦେଖି ଚିହ୍ନି ହେଲା ନାହିଁ । ଗାଲ ଦି'ଟା ଏକାବେଳକେ ବସି ଯାଇଛି, ଆଖି ଦି'ଟା କୋଠର ଭିତରକୁ ବହୁତ ପଶି ଯାଇଛି । ଶିଥିଳ ହାତ ଦୁଇଟିରେ ତା'ର ନୀଳ ମୋଟା ଶିରାଗୁଡ଼ିକ ଫୁଟି ଦିଶୁଛି । ଏଇ କେଇଟା ବର୍ଷ ଭିତରେ 'ହୋ' ବୁଢ଼ାର ଏଇ ପରିବର୍ତ୍ତନ ଦେଖି ଅବାକ୍ ହେଲି । ଶେଷରେ କହିଲି—"ଚିହ୍ନି ପାରୁଛ ?"

ଉତ୍ତର ଦେଲା, "ନାହିଁ ।"

"ମୁଁ ସେ ଥରେ ବର୍ଷା ପାଗରେ ଆସି ଏଠାରେ ରହି-ଯାଇଥିଲି ।"

"ହାଁ' ଆସିଥିଲେ । ରାସ୍ତା କାଦୁଅରେ ବଙ୍ଗଳା । ଅନେକ ହୁଏତ ଥରେ ଆଉ କେତେଥର ଆସିଛନ୍ତି, ସମସ୍ତଙ୍କୁ କ'ଣ ମନେ ରଖିଛି ?"

କଥାଟା ଏକାବେଳକେ ଠିକ୍ । କିନ୍ତୁ କଥା କହିବାର ଭଙ୍ଗୀଟା ଦେଖି ଯେପରି ନୂଆ ନୂଆ ମନେ ହେଲା । ବୁଢ଼ା ମୋ ସାଥିରେ

ବାହାର ଦରକାରୀ କଥା ବ୍ୟତୀତ ଆଉ କଥା ପକାଇବାକୁ ନାରାଜ। ହଠାତ୍ ସେହି ଯୁବତୀ ଝିଅଟି କଥା ମୋର ମନେ ପଡ଼ିଲା। କାହିଁ ସେ ଏତେବେଳଯାଏ ତ ଆସି ନାହିଁ। କୌତୁହଳ ଲାଗିଲା, ପଚାରିଲି—"ତୁମର ଝିଅ କୁଆଡ଼େ ଯାଇଛି?"

ସ୍ପଷ୍ଟ ଦେଖିଲି, ବୁଢ଼ାର ମୁହଁ ଉପରେ କାଳିମାର ରେଖା ଫୁଟିଉଠିଲା। ସେ ଯେପରି ମୋର ପ୍ରଶ୍ନ ଶୁଣିପାରି ନାହିଁ ସେହିପରି ଭାବରେ ବସି ରହିଲା। ବୁଝିବାକୁ ମୋର ଡେରି ହେଲା-ନାହିଁ—ମୁଁ ତାର ଗୋପନ କ୍ଷତରେହିଁ ଆଘାତ ଦେଇଛି। ଭାବିଲି ତାକୁ ଆଉ କିଛି ପଚାରିବି ନାହିଁ, କିନ୍ତୁ ମନର କୌତୁହଳ ମେଣ୍ଟାଇବା ପାଇଁ ମୁଁ ତାକୁ ଆହୁରି ଥରେ ଦି'ଥର ସେ ଝିଅଟି ବିଷୟରେ ପଚାରିଲି। ଶେଷରେ ସେ ନିରୁପାୟ ହୋଇ ମୋତେ ତାର ଝିଅର ଅନୁପସ୍ଥିତିର କାରଣ ଜଣାଇଲା।

ବାହାରେ ସେତେବେଳକୁ ଖୁବ୍ ଜୋରରେ ଥଣ୍ଡା ପବନ ବହୁଥିଲା। କେତେବେଳେ କମିତ ଭଙ୍ଗା ଝରକା ଭିତର ଦେଇ ଥଣ୍ଡା ପବନ ଘର ଭିତରକୁ ବୋହି ଆସି ଏକ ହିମ ପ୍ରଦେଶର ସୃଷ୍ଟି କରୁଥିଲା। ଟେବୁଲ ଉପରର ଦୀପଶିଖା ମରଣ-ଭୀରୁ ଚକ୍ଷୁ ପରି ଥରି ଥରି ଉଠୁଥିଲା। ମୁଁ ଚୁଲି ପାଖକୁ ଚୌକିଟା ଟାଣିନେଇ ଟିକିଏ ଜାକି କହିଲି,—"ଆଚ୍ଛା, କୁହ ତ"

ବୁଢ଼ା ମୋ ମୁହଁକୁ ଚାହିଁ ଧୀରେ ଧୀରେ କଥା ଆରମ୍ଭ କଲା— "ସେଦିନ ଠିକ୍ ଏହିପରି ଜାକର ପଡ଼ୁଥିଲା। ସନ୍ଧ୍ୟାର ଟିକିଏ ଆଗରୁ ଗୋଟିଏ ଯୁବକ ଆସି ପହଞ୍ଚିଲା। ତା'ର ବେଶଭୂଷା ଦେଖି ଅନୁମାନ କଲି ଯେ ସେ କାଳିମାଟିରେ କାମ କରେ। ସେ ଏଠାରେ ଅଧି ଘଣ୍ଟାଏ ରହିଲା। ସେ ମୋ ସାଥିରେ ଏପରି କଥାବାର୍ତ୍ତା

ସବୁ ଆରମ୍ଭ କଲି । ଯେପରି ମୁଁ ତାଙ୍କୁ ବାଧ ବାଧକତା କରି ଏଠାରେ ଅଟକାଇ ରଖି ତାର କାମର କ୍ଷତି କରୁଅଛି । ଖାଲି ମିଛଟାରେ ସେ ମୋତେ ଅନେକ ଖରାପ କଥା ମଧ୍ୟ କହିଲେ । ସେ ଖାଇପିଇ ସାରିଲାରୁ ମୁଁ ତାଙ୍କୁ ଶୋଇବାକୁ କହି ସାଇଆଡ଼କୁ ଟିକିଏ ଅନ୍ୟ କାମରେ ଗଲି । ଟିକିଏ ପରେ ଫେରି ଆସି ଦେଖେ, ସେ ମୋ ଝିଅ ସାଥିରେ ବେଶ ଗପ ଆରମ୍ଭ କରିଦେଇଛି । ଆପତ୍ତି କଲି ନାହିଁ । ଏମିତି ଗପ ଅନେକେ ତ କରିଥାଆନ୍ତି । ସେ ରାତିରେ ତାର ଦେହ କଣ ଖରାପ ହେଲା—ସକାଳୁ ତାର ଯିବାର ବନ୍ଦ ହେଲା । ଯା'ପରେ ଦୁଇଦିନ ଯାଏ ସେ ବିଛଣା ଛାଡ଼ିଲା ନାହିଁ । ଝିଅ ମୋର ଦିନରାତି ତାର ସେବା କରିବାରେ ଲାଗିପଡ଼ିଥାଏ । ଦିନେ ଦିନ ଦିପହରେ ସେ ଯିବାକୁ ବସିଲା । ଗୋଟିଏ ବଳଦ ଗାଡ଼ି ଠିକ୍ ହେଲା । ଗାଡ଼ି ଆସି ବଙ୍ଗଳା ସାମନାରେ ପହଞ୍ଚିଲା ବେଳକୁ ଦେଖିଲି ଝିଅ ମୋର ସଫା ଲୁଗାଟିଏ ପିନ୍ଧି ମୁଣ୍ଡର ବାଳ ସଜାଡ଼ୁଛି ।

"ହଠାତ୍ ସେ ଯୁବକ କହି ବସିଲା—'ଦେଖ ବୁଢା, ତମର ଝିଅ ମୋର ବହୁତ ସେବା କରିଛି । ତମର ଉପକାର ଶୁଝି ପାରିବି ନାହିଁ । ମୋ ଦେହ ଏଯାଏ ଭଲ ଲାଗୁନାହିଁ । ସୁତରାଂ ତମ ଝିଅ ଯଦି ମୋ ସାଥିରେ 'ଆମ୍‌ଦା' ଷ୍ଟେସନଯାଏ ଯାଇ ଛାଡ଼ିଦେଇ ଆସନ୍ତା ବଡ଼ ଉପକୃତ ହୁଅନ୍ତି । ଫେରିଲାବେଳେ ଏହି ଗାଡ଼ିରେ ଚାଲି ଆସିବ ସେ । କ'ଣ ତମର ଆପତ୍ତି ଅଛି ?'

"ଆପତ୍ତି କରିବାର କିଛି ନ ଥିଲା, ତେଣୁ ଆପତ୍ତି କଲି ନାହିଁ। ଝିଅ ମଧ୍ୟ ମୋର ଗାଡ଼ିରେ ବସି ତା ସାଥିରେ ଗଲା । କ୍ରମେ ସନ୍ଧ୍ୟା ହେଲା । ହେଉଁ ଗାଡ଼ି ଷ୍ଟେସନକୁ ଯାଇଥିଲା, ସେ ମଧ୍ୟ ଫେରି

ଆସିଲି; କିନ୍ତୁ ଝିଅର ମୋର ଦେଖା ନାହିଁ । ଶେଷରେ ଅନ୍ଧକାର ଘନାଇ ରାତିରେ ପରିଣତ ହେଲା—ଭୟ ଓ ଦୁଶ୍ଚିନ୍ତାରେ ମୋର ହାତ ପାଦ ଆଉ ଚଳିଲା ନାହିଁ । ଯେଉ ଶଗଡ଼ିଆ ଶଗଡ଼ ନେଇ ଯାଇଥିଲା ତାକୁ ଯାଇ ପଚାରିଲି, ସେ କହିଲା—'ବାବୁ ତ ତୋ ଝିଅ ସାଥିରେ ରେଲରେ ବସି କାଳିମାଟି ଗଲେ ।' ମୁଁ ସେଇଠି ମୁଣ୍ଡରେ ହାତ ଦେଇ ବସି ପଡିଲି ।

"ଦୁଇ ତିନିମାସ ପରେ ଖବର ନେଇ କାଳିମାଟି ଯାଇ ତାଙ୍କ ପାଖରେ ପହଞ୍ଚିଲି । ଯୁବକଟି ମୋତେ ଦେଖି ରାଗି ଉଠିଲେ । ମୋ ହାତରେ ଟଙ୍କା କେଇଟା ଗୁଞ୍ଜିଦେଇ କହିଲେ—'ଏଥର ଯାଅ, ଆମ ସୁଖରେ ବାଧା ଦିଅ ନାହିଁ ।" ତା'ପରେ ଜୋର୍ କରି ଆପଣା ରାସ୍ତା ଧରିବାକୁ କହିଲେ ।

"ରାଗ, ଦୁଃଖ ଓ ଘୃଣାରେ ମୋ ଶୁଖିଲା ଆଖିରୁ ପାଣି ଟପ୍ ଟପ୍ ଖସିପଡ଼ିଲା । ହାତର ଟଙ୍କା କେଇଟା ରାସ୍ତା ଉପରେ ବିଞ୍ଚିଦେଇ ଭାବିଲି,—ଝିଅ ମୋର ଗଲା କାହିଁ, ତାକୁ ତ ଦେଖିବାକୁ ପାଇଲି ନାହିଁ ।

"ରାସ୍ତା ଉପରେ ଥାଇ ଦେଖିଲି, ସେହି ଯୁବକଟି ତାଙ୍କର ବସାରୁ ବାହାରି ସାଇକେଲରେ ବସି ଗୁଲିଗଲେ । ସେ ଯେଉଁ କୋଠା ନିକଟରେ ଯାଇ ଓହ୍ଲାଇଲେ, ମୁଁ ଲୋକଙ୍କ ନିକଟରେ ମିଥ୍ୟା ପରିଚୟ ଦେଇ ସେହି କୋଠା ଦୁଆରେ ଯାଇ ହାଜର ହେଲି । ପ୍ରକାଣ୍ଡ ଦୁଇ ମହଲା କୋଠା । ଦୁଆର ମୁହଁରେ ଜଣେ ଦି'ଜଣ ବାବୁ ବାସନା ରୁମାଲରେ ନାକ ପୋଛୁଥାଆନ୍ତି ଆଉ ଧୀରେ ଧୀରେ ପଦଗୁରଣା କରୁଥାନ୍ତି । ସେମାନଙ୍କୁ ମଧ୍ୟ ଠକି ଭଣ୍ଡିକରି ମୁଁ ପାଖ

ଘରର ସିଡ଼ିଦେଇ ଉପର ଘରେ ଯାଇ ପହଞ୍ଚିଲି । ସ୍ପଷ୍ଟ ଦେଖିଲି, ସେହି ଯୁବକଟି ଗୋଟିଏ ଗଦିପକା କୁରୁଶ ଉପରେ ବସିଅଛି — ଆଉ ତାର ପାଖରେ ମୋର ଝିଅ । ଯାହାକୁ ମୁଁ ପନ୍ଦରଟି ବର୍ଷ କାଖରେ କୋଳରେ କରି ବଢାଇ ଆଣିଥିଲି, ତାକୁ ଦେଖି ଚିହ୍ନିବାର ଉପାୟ ଆଉନାହିଁ । ଦେହରେ ଖୁବ୍ ଦାମୀ ପୋଷାକ, ହାତରେ ତାର ମୁଦି ଜକ୍‌ଜକ୍ କରୁଛି । ଆହୁରି କେତେ ଯେ କ'ଣ ତା' ଦେହରେ ଭର୍ତ୍ତି ହୋଇଥିଲା ଆଜି ମୋର ଠିକ୍ ମନେ ନାହିଁ । ଯୁବକ ମୋତେ ଦେଖି ଅବାକ୍ ହୋଇଗଲେ । ଶେଷରେ ଝିଅ ମୋର ଯେତେବେଳେ ମୋତେ ଚିହ୍ନିଲା ସେ ସେତେବେଳେ ହଠାତ୍ ଚିତ୍କାର କରି ଅଜ୍ଞାନ ହୋଇ ପଡ଼ିଲା । ତା'ପରେ କ'ଣ ହେଲା ମୋର ମନେ ନାହିଁ । ମୁଁ ମଧ୍ୟ କାଠ ପାଲଟି ଯାଇଥିଲି । ଯେତେବେଳେ ଚେତନା ଆସିଲା, ସେତେବେଳେ ଦେଖିଲି ଯେ ମୁଁ ବଡ଼ ବଜାରର ରାସ୍ତା କଡ଼ରେ ଶୋଇଛି । ତାପରେ ଏହି କେତେ ବର୍ଷ ବିତିଯାଇଛି, ମୁଁ ଆଉ ତା'ର କୌଣସି ଖବର ଜାଣେ ନାହିଁ । ସତରେ ବାବୁ, ଝିଅ ମୋର ଯଦି ମରିଯାଇ ଥାନ୍ତା,········ ।

ବୁଢ଼ା ଦୀର୍ଘ ନିଃଶ୍ୱାସଟାଏ ପକାଇ ଚୁପ୍ ହୋଇଗଲା । ମୁଁ ମଧ୍ୟ ନୀରବରେ ବସି ରହିଲି, କିଛି କହିଲି ନାହିଁ । ପରଦିନ ପ୍ରଭାତରୁ ପୁଣି ମୋର ଯାତ୍ରା ଆରମ୍ଭ ହେଲା ।

ଆଜ ବର୍ଷ କେତେ ପରେ ଓଡ଼ିଆ ସ୍କୁଲ ଦେଖିବା ଅଭି-ପ୍ରାୟରେ ସେହି ରାସ୍ତାରେ ଯାଉଁ ଯାଉଁ ସେହି 'ନେଙ୍ଗା' ବୁଢ଼ାଟି କଥା ମନେ ପଡ଼ିଲା । ସେଦିନ ବେଲବୁଡ଼ ସହିତ ଯାଇ ସେହି ବଙ୍ଗଳା-ରେ ଉଠିଲି । ଭିତରକୁ ଯାଇ ବୁଢ଼ାର ନାମ ଧରି ଥରେ ଦୁ'ଥର

ଡାକିଲି, କିନ୍ତୁ କିଛି ଉତ୍ତର ମିଳିଲା ନାହିଁ । କିଛି ସମୟ ପରେ ଜଣେ ପ୍ରୌଢ଼ା ସ୍ତ୍ରୀଲୋକ ବାହାରକୁ ଆସି ମୋର ପାଦରୁ ମୁଣ୍ଡଯାକେ ଥରେ ଗୁହିଁଗଲେ, ତା'ପରେ ପଚାରିଲେ—"ତୁମେ କାହାକୁ ଖୋଜୁଛ ? ସେଇ ବୁଢ଼ା କୋହ୍ଲିକୁ ?—ସେ ତ ଅନେକ ଦୂଇବର୍ଷ ହେଲା ମରିଯାଇଛି । ବର୍ତ୍ତମାନ ମୋର ସ୍ୱାମୀ, ଏହି ବଙ୍ଗଳାର ଚୌକିଦାର । ତୁମେ କଣ ଏଠାରେ ରହିବ ?"

କହିଲି, "ରହିବ ନାହିଁ ଯେ, ମୋର ଜଣେ ଲୋକ ଦରକାର ।"

ବୁଝିପାରିଲା ନାହିଁ ପରି ସେ ! ମୋ ଆଡ଼କୁ ଗୁହିଁ ରହିଲା କେବଳ ।

ପୁଣି ମୁଁ କହିଲି—"ମୋର ଗୋଟିଏ ଲୋକ ଦରକାର—ସେଇ 'ହୋ' ବୁଢ଼ାଟିକୁ ଯେଉଁଠି ପୋତିଛନ୍ତି ସେହି ସ୍ଥାନଟି ଦେଖାଇଦେବ ।"

"ଆପଣ ଟିକିଏ ଅପେକ୍ଷା କରନ୍ତୁ"—କହି ସେ ଗୁଲିଗଲା ।

କିଛିକ୍ଷଣ ପରେ ଗୋଟିଏ ବାଳକ ସହିତ ମୁଁ ସେହି 'ହୋ' ବୁଢ଼ାର ସମାଧି ଦେଖିବାକୁ ଗୁଲିଲି । ରାସ୍ତାରେ ସେଇ ବାଳକଟି କେତେ କ'ଣ ଗପି ଯାଉଥାଏ—ବିଚାରା ସେ କୋହ୍ଲି ବୁଢ଼ାଟି ଭାରି ଭଲ ଲୋକ ଥିଲା । ସେ ମଲାପରେ ମଧ୍ୟ କେତେ ଲୋକ ଆସି ତାକୁ ଖୋଜିଛନ୍ତି । ଏଇ ତ ସେଦିନ ଗୋଟିଏ ମଟରଗାଡ଼ି ନେଇ ଜୁଆସିଲା ଗୁକ... ବାଳକ ଧରି ଜଣେ ସୁନ୍ଦରୀ ବାବୁଆଣୀ ଆସି ମୋ ମାଆକୁ ପଚାରିଲେ—'ସେଇ ବଙ୍ଗଳା ଚୌକିଦାର

ଅଛି ?' ମା' ତାଙ୍କୁ ଯେମିତ 'ନାହିଁ' କହୁଛନ୍ତି—ସେ ଲୋକଟିର କ କାନ୍ଦ ! ଆମେ ତ ଅବାକ୍ ! ତା'ପରେ ସେଇ ବୁଢ଼ାର ସମାଧି କେଉଁଠି ଦଆହୋଇଛି ପଗ୍ଚରିଲେ । ମା' ସ୍ଥାନଟାର ନାମ କହି ଲୋକ ସାଥିରେ ଦେବାକୁ କହୁବାରୁ କହିଲେ—ନା, ଦରକାର ନାହିଁ, ମୋର ଜଣାଶୁଣା ଜାଗା । ସେ ସେହି ସମାଧି ଆଡକୁ ଗ୍ଲିଗଲେ । ମୁଁ କନ୍ତୁ ପଛେ ପଛେ ଯାଇ ଦେଖିଲି ସେ ସେହି ସମାଧି ପଥର ଉପରେ ପଡ଼ି କାନ୍ଦୁଛନ୍ତି । ମୁଁ ତାହା ଦେଖି ଅବାକ ହୋଇଗଲି । ସେ ଯାହାହେଉ ଲୋକ କନ୍ତୁ ଭଲ । ଗଲା-ବେଳେ ମୋତେ କଛି ବକ୍‌ସିସ୍ ଦେଇଗଲେ ।"

ବୁଝିବାକୁ ମୋର ବଳମ୍ବ ହେଲା ନାହିଁ ଯେ—ସୁନ୍ଦରୀଟି କଏ ?

ମଁରବରେ ଅଉ କଛିଦୂର ଯାଇ ଗୋଟିଏ ବଡ଼ ତେନ୍ତୁଳି-ଗଛ ମୂଳରେ ସେଇ ବୁଢ଼ାର ସମାଧି ପାଖରେ ଆସି ପହଞ୍ଚିଲି । ଦେଖିବା ଭଳି କଛି ନ ଥିଲା । ଗୋଟିଏ ମାଟିଢ଼ିପ ଉପରେ ବଡ଼ ପଥରଟିଏ ଥୁଆ ହୋଇଛି । ମୁଁ କଛିକ୍ଷଣ ସ୍ଥାଣୁ ପରି ବସି ରହିଲି; ସେଇ ବୁଢ଼ାର ଶେଷ କଥାପଦକ ମୋର ମନେ ପଡଗଲା 'ହିଁଅ ମୋର ଯଦ ମରିଯାଏ ତା' ପଛକେ ଭଲ, ମାତ୍ର ମୁଁ'—କଥା ସେ ଶେଷ କରିପାରି ନ ଥିଲା ।

ମୁଁ ତାକୁ ସାନ୍ତ୍ୱନା ଦେଇ କହିଥିଲି,—"ଏମିତ ଚନ୍ତା କର ନାହିଁ । ଏ ତ ଭଗବାନଙ୍କର ଖେଳ ! ସୃଷ୍ଟିର ନୟମ ! —ତୁମେ କଣ କରିବ ?"

କାହିଁକ ଜାଣେ ନା, ସେଦନ ମୋର ମଧ ଦୁଇଟି ଆଖିରେ ଅଶ୍ରୁ ଭରି ଉଠିଲା । ସେଇ ପଥର ପାଖରେ ଛିଡ଼ାହୋଇ

ଭଗବାନଙ୍କ ନିକଟରେ ଜଣାଇଥିଲି—"ହେ ପ୍ରଭୁ, ଜୀବନରେ ଯେବେ ମନ୍ଦ କିଛୁ ପୁଣ୍ୟ କରିଥାଏ, ତେବେ ତା'ର ପୁରସ୍କାର-ସ୍ୱରୂପ କେବଳ ଏହି ପ୍ରାର୍ଥନା—ଯେପରି ଏହି ହତଭାଗ୍ୟ ବୁଢ଼ା ପରଲୋକରେ ସୁଖରେ ରହେ ।"

ତା'ପରେ କେତେ ବର୍ଷ ବିତିଗଲାଣି ।

କେଉଁଠି ବା ସେଇ ବଙ୍ଗଳା ରକ୍ଷକ 'ଦ୍ୱୋ' ବୁଢ଼ା, ଆଜ କେଉଁଠି ବା ତାର ଝିଅ ? କାହାକୁ ଆଜ ମନେ ପଡେ ନାହିଁ । ତେବେ ଗୋଟିଏ ପଦାର୍ଥ ମୋ ଆଖି ସାମନାରେ ବେଳେବେଳେ ନାଚଉଠେ—ତାହା ସେହି ତେନ୍ତୁଳି ଗଛମୂଳରେ ଏକ ମାଟିକୁଦ ଉପରର ବଡ଼ ପଥର ଖଣ୍ଡିକ ! ତା'ରି ଭିତରେ କେତେ ବ୍ୟଥାର ଅଗ୍ରୁଲ ରାଗିଣି ଯେ ବାଜି ଉଠୁଥିଲା—ଜନମନର ଅଜ୍ଞାତରେ କିଏ ଜାଣେ ! !



## ସାରା ଜୀବନର ଦାନ

—"ବାପା, ଗୋଟିଏ ପଇସା-ବାପା !"—

ଛଅଟା ବାଜି ଯାଇଥାଏ । ଉତ୍କଳ ଏସୋସିଏସନ୍‌ରେ ଗୋଦାବରୀଶବାବୁ ବକ୍ତୃତା ଦେବେ—ଓଡ଼ିଆ ସ୍ୱାର୍ଥରକ୍ଷା କମିଟି ଓ ସିଂହଭୂମି ସମସ୍ୟା ବିଷୟରେ ।—ତା' କଥାରେ କାନ ନ ଦେଇ ଆଗକୁ ବଢ଼ି ଗଲି ।

—"ବାପା, ଶୁଣିଲ ନାହିଁ ?—ଖାଲି ଗୋଟିଏ ପଇସା !—ପୁଣି ସେଇ କରୁଣ ସ୍ୱର ।

ଏଥର କିନ୍ତୁ ତା' ଆକୁଳ ପ୍ରାର୍ଥନା ଶୁଣି ଚମକି ଉଠିଲି । ପଇସେ ଅଧଲେ ଥାଇପାରେ ମନେକରି ପକେଟ ଭିତରେ ହାତ ଭର୍ତ୍ତି କଲି । ମାତ୍ର ପକେଟ ଥିଲା ଖାଲି—ଏକାବେଳକେ ଫାଉଁଫୁଉଁ ।

ପକେଟରେ ମୋତେ ହାତ ଭର୍ତ୍ତି କରିବା ଦେଖି ସେ ମୋର ପାଖକୁ ଲାଗି ଆସିଲା । ଓଠରେ ମୋର ହାତ ମାରିଦେଇ କହିଲା—"ଆହା-ହା···ହା, ଧନଟା ମୋର, —ଜଗନ୍ନାଥେ ତୋତେ ଅଧିକରୁ ଅଧିକ କରନ୍ତୁ ବାପ !" ତା'ର କୋଟରଗତ ଦୁଇଟି

ବୁଲ୍ଢାଙ୍କ ଚକ୍ଷୁର ତୀକ୍ଷ୍ଣ ଦୃଷ୍ଟି ମୋର ପକେଟ୍ ଭିତରର ହାତ ଉପରେ ନ୍ୟସ୍ତ ଥିଲା ।

ମୁଁ ଟିକିଏ ଇତଃସ୍ତତ ହେଲି—ଗ୍ଳାନି ଭିତରଟା ମୋର କମ୍ପି ଉଠିଲା । ସେ ଏକ ବଡ଼ ଆଶା ନେଇ ମୋ ନିକଟରେ ହାତ-ପତାଇ ଛିଡ଼ା ହୋଇଛି; ଆଉ ମୁଁ ଦାନବୀର ଭଳି ପକେଟ୍ ଭିତରେ ହାତ ଭର୍ତ୍ତିକରି ଛିଡ଼ାହୋଇଛି ।—ଏଣେ ପକେଟରେ ପଇସାଟାଏ ବି ନାହିଁ । ମୋ ନିକଟରେ ଏହା ଏକ ଗୁରୁତର ସମସ୍ୟା ହୋଇ ଉଠିଲା ।

ମୁଁ ତା'ର ହାତ ଦୁଇଟି ଧରିପକାଇ କହିଲି—"ମା!" । ଲଜ୍ଜାରେ ମୁଁ ଲାଲ ହୋଇଗଲି ! ସେ କିନ୍ତୁ ଅସ୍ପଷ୍ଟ ସ୍ୱରରେ ଅପେ ଅପେ କହି ଉଠିଲା—"ହଉ ବାପା !"—ମୁଣ୍ଡ ମୋର ତଳକୁ ନଇଁଗଲା ।

ସେ କିନ୍ତୁ ମୋର ହୃଦୟର ଭାବ ପରିଷ୍କାର ବୁଝି ପାରିଲା ଭଳି ଏତିକି କହିଲା—"ଜଗନ୍ନାଥ ତୋର ମଙ୍ଗଳ କରନ୍ତୁ ବାପା !"—ଆଉ ବାଡ଼ି ଠୁକୁ ଠୁକୁ କରି ଆଗକୁ ଗ୍ଳଲିଲା ।

ମୁଁ ସେଇଠି କାଠଭଳି ଛିଡ଼ା ହୋଇ ରହିଲି—ତା'ର ଗତିପଥକୁ ଗ୍ଳହିଁ । ବତିଖୁମ୍ବ ପାରହୋଇ ସେ ସଡ଼କ ଭିତରେ ଲିଭିଗଲା । ମୁଁ ଅନ୍ଧ-ଗ୍ଳାଳିତବତ୍ ଉତ୍କଳ ଏସୋସିଏସନ୍ ହତା ଭିତରକୁ ପଶିଲି ।

ମଣିଷ ତା' ଜୀବନରେ କେତେ କ'ଣ ସୁନାଲି କଳ୍ପନା ନେଇ ନିତ ବ୍ୟସ୍ତ ଥାଏ । କିନ୍ତୁ ତା'ର ସେଇ କଳ୍ପନା ଯେ ଖୁବ୍

କ୍ୱଚିତ ଫଳବତୀ ହୁଏ ଏଥିରେ ସନ୍ଦେହ ନାହିଁ — କମ୍ପା ପାର୍ଶ୍ୱିକ ପରିସ୍ଥିତି ନେଇ ଶେଷରେ ସେ ଆପଣା ସ୍ଥାଏଁ ବାଧ୍ୟ ହୋଇ ସେଇ ସବୁ କଳ୍ପନାକୁ ଚିରଦିନ ପାଇଁ ହୃଦୟ ଭିତରୁ ପୋଛିଦିଏ

—ମୋର ଭାଗ୍ୟରେ ଠିକ୍ ସେଇ ଦଶା ଘଟିଥିଲା । ଯେତେ-ବେଳେ ମୁଁ ସ୍କୁଲରେ ପଢ଼େ, ମନେ ମନେ କେତେ ଭାବନ୍ତି— ଯେତେବେଳେ ଏମ୍. ଏ. ଅଭ ବି. ଏଲ୍, ଦ'ଟାଯାକ ଉପାଧି ହାସଲ କରିବି, ଭଲ ଗୁଡ଼ିକ୍ୱଟାଏ ଚାକିରୀ ମିଳିବ — ଅନ୍ତତଃପକ୍ଷେ ଗୋଟିଏ ଦପୋଟି । ମାସକୁ ପାଞ୍ଚ ଶହ ଟଙ୍କା ତ ଥୁଆ ! କିନ୍ତୁ ଯେତେବେଳେ ମୁଁ ବାସ୍ତବରେ ବି. ଏ. ପାଶ କଲି, ସେତେବେଳେ ଦେଖିଲି ମୋର ଚତୁର୍ଦ୍ଦିଗ — ଘୋର ଅନ୍ଧକାର — ଦାରିଦ୍ର୍ୟ ! ତା' ଉପରେ ପୁଣି ସେହି ମହାସଂକ୍ରାମକ ବ୍ୟାଧି 'ବେକାର' ମୋ ପରି ଉପାଧିଧାରୀମାନଙ୍କୁ ଦେଖି ବିରାଟ ମୁଖବ୍ୟାଦାନ କରି ଅଟ୍ଟହାସ କରୁଥିଲା — ଜୀବନ୍ତ ଅଟ୍ଟହାସ ।

ମୁଁ ଚମକି ଉଠିଲି । ଏ ପୁଣି କ'ଣ ହେଲା ? ମୋର ସବୁ ସୁନାଲି କଳ୍ପନା ପାଣି ଫୋଟକା ପରି ମିଳାଇଗଲା । ରଙ୍ଗିନ୍ ସ୍ୱପ୍ନର ବିରାଟ ସ୍ତମ୍ଭ ମୋର ବେକାର-ବନ୍ୟାର ପ୍ରଚଣ୍ଡ ଆଘାତରେ ଭାସି ଗ୍ଲଲଗଲା । ଶେଷରେ ମୋତେ ବାଧ୍ୟ ହୋଇ ଜାମଶେଦ୍‌ପୁରର ବିରାଟ ଯନ୍ତ୍ର-ଦାନବ ନିକଟରେ ଆତ୍ମସମର୍ପଣ କରିବାକୁ ପଡ଼ିଲା— ମାସକୁ ଗ୍ଲଳିଶ ଟଙ୍କା ଦେତନର କିରାଣୀଗିରି ।

ସେଦିନ ଅଫିସ କାମସାରି ବସ୍ତିକୁ ଫେରୁଥାଏ,—ନାରଙ୍ଗ-ସମ୍ ଦୋକାନ ପାଖରେ ସାଇକେଲ୍ ଚକଟାରୁ ପବନ ବାହାରି ଗଲା । ବାଧ୍ୟ ହୋଇ ଗ୍ଲଲି ଗ୍ଲଲି ଫେରୁଥାଏ । ରିଗେଲ୍ ସିନେମା

ପାଖରେ ମୋର ପରିଚିତ ଏକ ବନ୍ଧୁବାନ୍ଧବଙ୍କ ସହ ଦେଖାହେଲା । ଫୁଟ୍‌ପାଥ୍ ଉପରେ ଛିଡ଼ାହୋଇ ଦହେଁ କେତେ ଗପ ଆରମ୍ଭ କରି-ଦେଲୁଁ । ପ୍ରାୟ ଦଶ ବାର ମିନିଟ୍ ପରେ ସେ ମୋଠାରୁ ବିଦାୟ ନେଇ ଅଳ୍ପଦୂର ଯାଇଥାଆନ୍ତି—ପଛରୁ ହଠାତ୍ ଶୁଣିଲି—"ବାପା, ଗୋଟିଏ ପଇସା ।"

ମୁଁ ଟିକିଏ ଥମିଗଲି; ପୁଣି ସାଇକେଲ୍ ଠେଲି ଆଗକୁ ଚାଲିଲି । ଭାବିଲି—ଏ ଦୁର୍ବଳତା ମୋର କାହିଁକି ? ଏ ତ ସଂଘର୍ଷ-ମୟ ଜଗତ ! ଏ ସଂଘର୍ଷରେ କେତେ କେତେ ଲୋକଙ୍କର କେତେ ମହାପରିବର୍ତ୍ତନ ଘଟୁଛି—'ଆଜି ଯେ ରାଜେନ୍ଦ୍ର ସନେ କାଲି ସେ ଫକୀର !'—ୟା'ର ପରି ତ ଅହରହ କେତେ ଭିକାରୀ ପଡ଼ି ରହି-ଛନ୍ତି—ତାଙ୍କୁ କିଏ ପଚାରୁଛି ! ଚାରିପାଖରୁ କେବଳ ଆବେଗ-ଭରା ସହସ୍ର କରୁଣ ନିବେଦନ—"ବାବୁ ଦିଅ—, ବାବୁ ଦିଅ ।" କାହାକୁ କେତେ ଦେବ ?—ଏକୁ ଆରେକ ମହାଦୁଃଖୀ !

କେତେ କ'ଣ ଭାବି ତା' ଆଡକୁ ନ ଚାହିଁ ମୁଁ ଆଗକୁ ଚାଲିଲି । ପୁଣି ତା'ର ଆକୁଳ ପ୍ରାର୍ଥନା କାନ ପାଖରେ ମୋର ଗୁଞ୍ଜରି ଉଠିଲା—'ବାପା, ଚାଲି ଯାଉଛ ? ପଛକୁ ଫେରି ଚାହିଁଲ ନାହିଁ ?' —ଆଉ ମୋର ହୃଦୟ ଭିତରେ ସତେ ଯେପରି କିଏ ଚିତ୍କାରକରି ଉଠିଲା—'ଆରେ ସେ ବି ତ ତୋରି ପରି ଜଣେ ମଣିଷ ! ମଣିଷ ତ !—ଆଉ ତୁ ତାକୁ ଟିକିଏ ଫେରି ଚାହିଁବାକୁ ବି ନାରାଜ ! କି ବିରାଟ ଅସମ୍ମାନ ! ଏହି ସବୁ ତୋର ମାନବିକତା ପ୍ରତି ଉପଯୁକ୍ତ ଅଭ୍ୟର୍ଥନା ଧିକ୍ ପାଷାଣ !'—ମୋର ପାଦ ଯେପରି ସତକୁ ସତ ପଥର ପାଲଟି ଗଲା । ମୁଁ ଆଗକୁ ଯାଇ ପାରିଲି ନାହିଁ, ସେଇଠି ଫେରି ଦେଖିଲି, ସେ ଦିନର ସେହି ଦୈନ୍ୟ ଦୁର୍ଦ୍ଦଶାଗ୍ରସ୍ତ

ବୁଢ଼ୀ ଭିକାରଣୀ, ଅର୍ଦ୍ଧନଗ୍ନ ଶରୀର, ମୁଣ୍ଡରେ ତା'ର ନେଖାଁଟ ପରି ନୁଖୁରା ଧଳା ବାଳ ଝୁଣ୍ଟ ଫରୁ ହୋଇ ଉଡୁଛି—ଶତଚ୍ଛିନ୍ନ ମଇଳା ଲୁଗା ଖଣ୍ଡିକ, ତା' ଉପରେ ବ ସହସ୍ର ତାଳି ଲାଗିଛି। ନିଷ୍ପ୍ରଭ କୋଟରଗତ ଚକ୍ଷୁ, ହାଡ ଉପରେ ଯେପରି ଚମଡ଼ା ଘଞ୍ଚଣି ହୋଇଛି କେବଳ ! ଏକ ଜୀବନ୍ତ ନର କଙ୍କାଳ !

ସେଇ ବୁଢୀ ଭିଖାରଣୀ ଆଡ଼କୁ ଗୃହାଁନ୍ତି ମାତ୍ରକେ ମୁଁ ତା'ର ଆଖିର ମୂକ ଭାଷା ବୁଝି ପାରିଲି । ହାତ ମୋର ଯନ୍ତ୍ର-ଗୃଳିତ-ବତ୍ ପକେଟ୍ ଭିତରେ ଭର୍ତ୍ତି ହେଲା । ସୁଜ୍‌କଟିଏ କେବଳ ଥିଲା; ମୁଁ ସେଇ ସୁଜ୍‌କଟି ନେଇ କମ୍ପିତ ହସ୍ତରେ ବୁଢ଼ୀର ହାତ ଉପରେ ରଖିଦେଲି ।

ଆହା-ହା-ହା-ବାବା, ଜଗନ୍ନାଥେ ତୋତେ ଅଧିକରୁ ଅଧିକ କରନ୍ତୁ ବାପ, ଆହା-ହା-ହା···ଅଃ' କହି ସୁଜ୍‌କଟିକୁ ଖୁବ୍ ଯତ୍ନ ସହକାରେ କାନରେ ଗଣ୍ଠାଇ ଅଣ୍ଟାରେ ଖୋସି ବୁଢ଼ୀ ଯେଉଁ ରାସ୍ତା ଧରି ଆସିଥିଲା ବାଡ଼ ଠୁକୁ ଠୁକୁ କରି ପୁଣି ସେହି ରାସ୍ତାରେ ଗୃଲିଲା ।

ମୁଁ କିନ୍ତୁ ସେଇ ଫୁଟ୍‌ପାଥ୍ ଉପରେ ନିର୍ଜୀବ ପ୍ରତିମା ପରି ଛିଡ଼ାହୋଇ ରହିଲି । ମୋ ମନରେ ଏକ ବିଚିତ୍ର ଚିନ୍ତାଧାରା ଖେଳି ଉଠିଲା । କେତେ ଲୋକ ଏହି ହତଭାଗ୍ୟ ବୁଢୀକୁ ଧିକ୍କାର କରୁ ନ ଥିବେ ! କେହି କେହି ମଧ୍ୟ ପୁଣ୍ୟ ପ୍ରାପ୍ତିର ଗର୍ବ ନେଇ ଅଧଲାଏ ପଇସାଏ ତା' ସାମନାରେ ଫିଙ୍ଗି ଦେଉଥିବେ—ତାଚ୍ଛଲ୍ୟରେ ! କିନ୍ତୁ ଭଗବାନ କ'ଣ ତାକୁ କେବଳ ଦୁଃଖ ସହିବାକୁ ଜନ୍ମ ଦେଇଛନ୍ତି ?—ନା ତାକୁ ପେଟପୂରା ମୁଠାଏ ଖାଇ-

ବାକୁ ମିଳୁଛି,—ନା ଶୋଇବାକୁ ଟିକିଏ ଯାଗା,—ନା ପିନ୍ଧିବାକୁ ଖଣ୍ଡିଏ କନା ? ଓଃ, ମଣିଷ ଜୀବନର କ'ଣ ଏହି ପରିଣତି ! ମାନବ ହୃଦୟର ଏଇଥି କ'ଣ ଚରମ ଦୁର୍ଗତି ! ଭୀଷଣ ! ···ହତାଶମୟ ! !

—ଅନ୍ୟମନସ୍କ ଭାବରେ ମୁଁ ଯେତେବେଳେ ବସାରେ ପହଞ୍ଚିଲି ସେତେବେଳେ ହୃଦୟ ମୋର ସେହି ପ୍ରପୀଡ଼ିତ ଦୀନ-ସମାଜ ପ୍ରତି ସମବେଦନାରେ ଭରି ଉଠିଥାଏ ।

କିଛିଦିନ ପରେ—

ସେଦିନ ଥାଏ ଶନିବାର—ଅଫିସରୁ ଫେରି ଅଶ୍ୱସ୍ତିର ନିଶ୍ୱାସ ମାରି ବାରଣ୍ଡାରେ ବସି ଗଳ୍ପ ପଢୁଥାଏ । କେତେ ଅସଂଲଗ୍ନ ଚିନ୍ତା ମସ୍ତିଷ୍କରେ ମୋର ଖେଳି ଉଠୁଥାଏ—ତା'ର କଳନା ନାହିଁ । କାଲି ରବିବାର—ଅନ୍ୟ ଦିନ ପରି ଆଠ ଘଣ୍ଟା ଖଟଣିର ଆଶଙ୍କା ନାହିଁ । କାଲି ଦିନଟା ଭିତରେ କ'ଣ କ'ଣ କରିବାକୁ ହେବ ? ଅନ୍ତତଃ ସେଇ ପଖ ଲଖିଆ ସ୍ନେକର୍ ସାଇବଠାକୁ ଟିକିଏ ସଲାମ ବଜାଇ ଆସିବାକୁ ହେବ—ତା' ନ ହେଲେ ଟଯ ବଡ଼ ବଡ଼ିଆଙ୍କ ପାଖକୁ ଯିବା ରାସ୍ତା ଆମର ବନ୍ଦ ! ତା'ପରେ 'ରହସ୍ୟମୟୀ'ର ପାଣ୍ଡୁଲିପିଟା ନେଇ ଆମ ତ୍ରିପାଠୀଙ୍କ ପାଖକୁ ଟିକିଏ ଯିବାକୁ ହେବ । ଏଣେ ପୁଣି ସନ୍ଧ୍ୟାକୁ ଉତ୍କଳ ଏସୋସିଏସନ୍‌ରେ ସୋସାଇଟିର ମିଟିଂ ଅଛି । ବଜାରରୁ ସପ୍ତାହକ ପାଇଁ ଘରର ସଉଦା କିଣିବାକୁ ହେବ । ଏମିତି ଆହୁରି କେତେ ! ଅଫିସ ଛୁଟି ହେଲେ ମଧ୍ୟ ବସାରେ ଭି କାମ ଭରି ରହିଛି ! ଦିନ ଗୋଟିଏ ମଧ୍ୟ ବିଶ୍ରାମ ନାହିଁ ! ଓଃ କି ଜଞ୍ଜାଳ—

ଏତକ ବେଳେ ଶବ୍ଦାର ଉଠିଲା—"ବାବୁ, ଗୋଟିଏ ପଇସା ମିଳୁ ।"

ମୁଁ ତା' ଆଡକୁ ଫେର ଦେଖିଲି—'ଏଇ ଯେ ଏ ତ ସେହି ଭିଖାରୁଣୀ ବୁଢ଼ୀ । ଆ, ଆ, ଏଇଠି ବସ'—ଅତର୍କିତରେ ଏତକ ମୋ ମୁହଁରୁ ବାହାରି ପଡ଼ିଲା ।

ସେ ବାରଣ୍ଡା ଉପରେ ଉଠି ବସିଲା ଆଉ ଅଶ୍ୱସ୍ତିର ନିଶ୍ୱାସ-ଟିଏ ଛାଡ଼ି ଧୀର ସ୍ୱରରେ କହିଲା—'ଗୋଟିଏ ପଇସା ମିଳିଯାଉ ବାବୁ !' ମୋ ଆଖି ଆଗରେ ବୁଢ଼ୀର ଜୀବନ ସ୍ପଷ୍ଟ ହୋଇ ଉଠିଲା—ତା'ର କୋଟରଗତ ଚକ୍ଷୁ ଦୁଇଟିରେ ଦୟାର ଯାଚଜ୍ଞା ଭରି ରହିଛି, ସ୍ୱରରେ ହୃଦୟସ୍ପର୍ଶୀ କମ୍ପନ ପରିସ୍ଫୁଟ ହୋଇଉଠୁଛି !

'ଗୋଟିଏ ପଇସା ଜମା ?' ମୁଁ ପଚାରିଲି । ସେ ମୋତେ ଗୁହିଁ ମୁଣ୍ଡଟି ଟେକିଇ ଧୀରକରି ହସିଦେଲା ଆଉ ମୁଣ୍ଡଟି ତାର କୃତଜ୍ଞତାରେ ନଇଁ ପଡ଼ିଲା ।

'ଅଚ୍ଛା ବୁଢ଼ୀ – ମୋଟ କେତେ ପଇସା ପାଇଲୁଣି ?' – ମୁଁ ହସିକରି ପଚାରିଲି ।

'ପାଞ୍ଚୋଟି ପଇସା ମିଳିଛି ବାବୁ' – ବୁଢ଼ୀ, ତା'ର ଛିଣ୍ଡା ଲୁଗା ଗଣ୍ଠିରୁ ପଇସା ବାହାର କରି ମୋ ଆଗରେ ଗଣିଦେଲା ।

'ପାଞ୍ଚ ପଇସା ଜମା ?—ଅଚ୍ଛା ବୁଢ଼ୀ, ତୋ ଘରେ କେତେ ପ୍ରାଣୀ କୁଟୁମ୍ବ ?'

'ଘର ?' 'ପ୍ରାଣୀ ?' ବୁଢ଼ୀ ବିକଟ ଅଟ୍ଟହାସ କରି ଉଠିଲା । ତା'ର ସେହି ଅଟ୍ଟହାସରେ ବସା ମୋର କମ୍ପି ଉଠିଲା । ଗୃହକରଟା

ଦୋମାର ଘର ଭିତରୁ ଦଉଡ଼ି ଆସିଲା, ଆଉ ଭିଖାରୁଣୀଠାଏ ଗୋଳ କରୁଛୁ ଦେଖି ମଦନ ମନେ ରାଗି ଉଠିଲା ।

ମୁଁ ନିଜର ଭୁଲ ବୁଝି ପାରିଲି—ଭିଖାରୁଣୀର ପୁଣି ଘର କାହିଁ ? ତା'ର ତ ରହିବାର କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ । ଯେଉଁଠି ରାତିଠାଏ ବିତାଇ ଦେଲା, ସେଇ ହେଉଛି ତା'ର ଘର । କିନ୍ତୁ କୁଟୁମ୍ବ ? କେହି ହେଲେ ତ ତା'ର ଆପଣାର ଥିବେ – ପୁଅ ଝିଅ କି ନାତି ନାତୁଣୀ ।

ମୁଁ ପୁଣି ମୋ କଥାକୁ ବାହେରାଇ କହିଲି – 'ଆରେ ବୁଢ଼ୀ ଘର ସିନା ନାହିଁ – କିନ୍ତୁ ତୋର ଆପଣାର ହୋଇ କେହି ଥିବେ ତ ?" ସେ ତାଛୁଲ୍ୟ ସହ ଟିକିଏ ହସି ଦେଲା ଆଉ ମୁଣ୍ଡ ହଲାଇ କହିଲା—'କେହି ନାହାଁନ୍ତି ବାବା, କେହି ନାହାଁନ୍ତି ।' ଗୋଟିଏ ଦୀର୍ଘ ନିଶ୍ୱାସ ବୁଢ଼ୀର ପଞ୍ଜରାକାଠି ଥରାଇ ବାହାରି ଆସିଲା । ହୃଦୟ ମୋର ବ୍ୟଥାରେ ଅତୁର ହୋଇ ଉଠିଲା । ହଁ, ଜଗତରେ ଏହିପରି ତ ଅନେକ ଲୋକ ଅଛନ୍ତି, —ନା ଅଛି ତାଙ୍କର ଘର, ନା ଆପଣାର ବୋଲି କେହି ! ସଙ୍ଗେ ସଙ୍ଗେ ମୁଁ ଚାକରକୁ ଆଲମାରୁ ମୋର ପଞ୍ଜାବିଟା ଆଣିବାକୁ କହିଲି । ପକେଟରେ ଗୋଟାଏ ଟଙ୍କା ଥିଲା, ଟଙ୍କାଟି ନେଇ ବୁଢ଼ୀର ହାତ ଉପରେ ଧୀର କରି ରଖିଦେଲି ।

ଟଙ୍କାଟିଏ ! ବୁଢ଼ୀର ଆଖି ଝଲସିଗଲା । ତା'ର ସେଇ ନିଷ୍ପ୍ରଭ ଆଖି ଦୁଇଟିରେ ପ୍ରସନ୍ନତା ଆଉ ଆଶୀର୍ବାଦର ଛାୟା ନାଚି ଉଠିଲା । ଦଣ୍ଡେ ନମା ଅଡ଼କୁ ଚାହିଁଲା, ଆଉ 'ଜଗନ୍ନାଥ ମହାପ୍ରଭୁ ବଡ଼ କରନ୍ତୁ ବାପା'—ଏହା କହି ରାସ୍ତା ଉପରକୁ ଓହ୍ଲାଇ ଆନନ୍ଦରେ ଚାଲିଲା-ବାଡ଼ି ଠୁକୁ ଠୁକୁ କରି । "ଅଜ୍ଞା, ଏଇ ମାଗିଖାଇ ବୁଢ଼ୀଟାକୁ

ଝଙ୍କାଟାଏ ଦେଇ ପକାଇଲେ ? ବୁଢ଼ୀ ଗୁଲିଯିବା ସଙ୍ଗେ ସଙ୍ଗେ ଗୁଜବର ଝୋକ ଅବାକ୍ ହୋଇ ପଡୁଥିଲା ।

''ଆଃ ! ଆଜ ବେଗୁର ଗଗୀବ ବୁଢ଼ୀଟା !' କହି ବଇଣୀରେ ଯାଇ ପଡ଼ିଲି, ସେହି ଦିନଠାରୁ ମୁଁ ଯେତେବେଳେ ଯେଉଁଠି ବୁଢ଼ୀକୁ ପାଏ, ତା' ହାତରେ କିଛି ନା କିଛି ରଖିଦିଏ ନିଶ୍ଚୟ—କେବେ ଦୋଅଣୀ, କେବେ ସୁଜିକ, କେବେ ଦୁଇ ଗୁର ପଇସା ମଧ୍ୟ ।

ଭିଖାରଣୀ ବୁଢ଼ୀର ହୃଦୟରେ ମଧ୍ୟ ମୋ ପ୍ରତି ଏକ ଆକର୍ଷଣ ଆସି ଯାଇଥିଲା । ସେଥିପାଇଁ ବୁଡୀ ନିତି ଆସେ, କେତେ କଥା ଗପେ । ତା' ଭିତରେ ନିଜ ଦୁଃଖ କଥା ବେଶି କହେ—'ବାବୁ ଏ ଯେଉଁ ସହର, ଆମ ଓଡ଼ିଆ ଲୋକେ ଖୁବ୍ କମ୍ ଅଛନ୍ତି— ଆଉ ତ ସବୁଯାକ ବଙ୍ଗାଳି, ସାଇବ,ଖୁରୁଣ୍ଟା, ତେଲଙ୍ଗୀ,—ବାବୁ, ସେମାନେ ଯଦି ଗୋଟାଏ ପଇସା ଦିଅନ୍ତେ ! ଛି, ଛି, ଦେଖିଲେ ଅଠୁରି ମାରି ଗୋଡ଼ାନ୍ତି । ଆମ ଓଡ଼ିଆ ଲୋକେ ଅଠୁରେ ପଇସେ ଅଧଲେ କ ଦୋଗଣୀ ମହାଏ ହେଲେ ଦିଅନ୍ତି । ଅଣ୍ଟ ବାବୁ, ଏ ପରା ଆମ ଓଡ଼ିଆ ମୁଲକ ଥିଲା—ସେମାନେ କ'ଣ ଲଢାଇ କରି ଆମଠୁ ନେଇଛନ୍ତି ?' ଶେଷରେ 'ଜଗନ୍ନାଥ ତୋତେ କୋଟି ପରମାୟୁ ଦିଅନ୍ତୁ, ଆହା-ହା-ହା' କହି ବୁଢୀ ତା'ର ଯାତ୍ରା ପଥରେ ପାଦ ଚଳାଏ ।

ସେଦିନ ଥିଲା ରବିବାର । ଅଫିସ ଛୁଟି, କିନ୍ତୁ ଦିନଟାଯାକ ବଜାର କାମରେ ବ୍ୟସ୍ତ ଥିଲି । ସନ୍ଧ୍ୟାବେଳେ ଟିକିଏ ମନ ଆନନ୍ଦରେ ବୁଲି ବାହାରିଲେ । ଟି; ଆର୍ ଝାଇପ, କଦ୍‌ମା, ରାଣୀକୁଦା ଷ୍ଟୋପ ହୋଇ ବଷ୍ଟୁପୁର କସି‌ଂ ନିକଟରେ ପହଞ୍ଚି ଦେଖିଲି, ଗୋଲ୍

ସିନେମାର ଫୁଟ୍‌ପାଥ ଉପରେ ଅନେକ ଲୋକ ରୁଣ୍ଡ ହୋଇଅଛନ୍ତି। କୁତୂହଳ ବଶତଃ ମୁଁ ମଧ୍ୟ ସେଇଆଡକୁ ଗଲି। 'କଥା କଣ' ଏଇ ପ୍ରଶ୍ନ ମୋର ହୃଦୟରେ ସ୍ୱାଭାବିକ ରୂପ ପାଇ ଛିଡ଼ା ହେଲା; ଆଉ ମୁଁ ଭିଡ଼ ଠେଲି ଭିତରେ ପହଞ୍ଚି ଯାହା ଦେଖିଲି ସେଥିରେ ମୋର ହୃତ୍‌ସ୍ପନ୍ଦନ ଦ୍ରୁତ ହୋଇ ଉଠିଲା। ଏ ଯେ ସେହି ଭିଖାରିଣୀ ବୁଢୀ ମୂର୍ଚ୍ଛିତ ହୋଇ ପଡଛି, ମୁଣ୍ଡରୁ ତାର ରକ୍ତଧାର ଛୁଟିଛି।

"କଣ ହେଲା ?"—ମୁଁ ପାଖ ଲୋକକୁ ପଚାରିଲି।

"ମୋଟର ଚକତଳେ ପଡ଼ିଗଲା।" କଏ ଜଣେ କହିଲା।

"ଇସ୍‌ ମେ ଶାଲୀ ବୁଢୀକାହି ଗଲ୍‌ତି ହୈ"—ଜନତା ମଧ୍ୟରୁ ଆଉ ଜଣେ କଏ କହିଲା।

"ନା, ନା, ଏ ବେଚାରୀର ଦୋଷ ନାହିଁ—ଦୋଷ ମାତାଲ ଡ୍ରାଇଭର୍‌ର !" କେହି ତୃତୀୟ ବ୍ୟକ୍ତି ତା'ର ଜବାବ୍ ଦେଲା ଖୁବ୍ ଦୃଢତା ସହକାରେ।

ମୁଁ ବଡ଼ ମର୍ମାହତ ହେଲି ସେ ଦୃଶ୍ୟ ଦେଖି, ଆଉ ଠିକ୍ ସେତିକିବେଳେ ଭିଖାରିଣୀ ବୁଢ଼ୀ ଆଖି ଖୋଲି ଶୂନ୍ୟ ଦୃଷ୍ଟିରେ ଥରେ ଚାରିଆଡ଼କୁ ଚାହିଁଲା—ଆଉ ତା'ର ଦୃଷ୍ଟି ମୋ ଉପରେ ପଡ଼ିବା ମାତ୍ରକେ ସ୍ଥିର ହୋଇଗଲା। ତା'ର ସେହି ନୀରସ ଆଖି ଦୁଇଟିରୁ ଦୁଇଟୋପା ଲୁହ ଖସିପଡ଼ିଲା।

ବଡ଼ କଷ୍ଟରେ ସେ ମୋ ଆଡକୁ ଚାହିଁ ପଦଏ କଥା କହିଲା, "ବାପା"। ପୁଣି ଆଖି ଦୁଇଟି ତାର ବନ୍ଦ ହୋଇଗଲା। ମୁଁ ବିହ୍ୱଳ

ହୋଇ ଉଠିଲି । ତା ପାଇଁ କଣ ପ୍ରତିକାର କରିବି ହଠାତ୍ କର୍ତ୍ତବ୍ୟ ସ୍ଥିର କରିପାରିଲି ନାହିଁ । ଅବଶେଷରେ ଗୋଟିଏ ଟେକସି ଭଡ଼ା କରି ସେଥିରେ ତାକୁ ନେଇ ବସାକୁ ମୋର ଆଣି ଆସିଲି ।

ତାକୁ ବିଛଣାରେ ଶୁଆଇ ଡାକ୍ତରଙ୍କୁ ଖବର ଦେଇ ମୁଣ୍ଡର ଆଘାତ ସ୍ଥାନରୁ ତା' ରକ୍ତ ଧୋଇବାକୁ ଲାଗିଲି । କିଛିସମୟ ପରେ ସେ ଆଖି ଖୋଲିଲା—"କମିତି ଲାଗୁଛି ମା ?" ମୁଁ ପଚାରିଲି ।

ସେ କିନ୍ତୁ କୌଣସି ଉତ୍ତର ଦେଲା ନାହିଁ; କେବଳ କମ୍ପିତ ହସ୍ତରେ ତା'ର ଗଣ୍ଠିଗଣ୍ଠି ବିଶିଷ୍ଟ ବୁଜୁଲାଟି ଖୋଲି ତାର ଭିତରୁ ଗୋଟିଏ ଛୋଟ ପୋଟଲି ବାହାର କଲା । ସେଇଟି ମୋ ହାତରେ ଧରାଇ ଦେଇ ଖୋଲିବାକୁ ଇଙ୍ଗିତ କଲା । ମୁଁ କମ୍ପିତ ହସ୍ତରେ ପୋଟଲି ଖୋଲି ଦେଖିଲି—ତା'ର ଭିତରେ ଅଛି ପଚାଶ ଟଙ୍କା ତେରଅଣା ପଇସା ! ପୁଣି ଫେରି ବୁଢ଼ୀକୁ ଦେଖିଲି—ଆଖିରୁ ତାର ଦୁ'ଧାର ଲୁହ ଗଡ଼ିପଡୁଥାଏ । ଶେଷରେ ସେ ବଡ଼ କଷ୍ଟରେ ଅସ୍ପଷ୍ଟ ସ୍ୱରରେ କହିଲା—"ଏହା ମୋର ସାରା ଜୀବନର ଅର୍ଜନ ବାବା ! ତୋତେ ଛାଡ଼ି ଏହା ମୁଁ କାହାକୁ ଦେବି ? ମୋର ଆପଣାର ହୋଇ କିଏ ଅଛି ଯେ ? ଲୋକ ମୁହଁରେ ଶୁଣିଛି ପଇସା ଖର୍ଚ୍ଚ କଲେ କୁଆଡ଼େ ଏଇଟା ଆମ ଓଡ଼ିଆ ମୁଲକ ହେବ । ଆମ ଜାତି ସୁଖରେ ରହିବେ, ପରଠୁ ମାଡ଼ ଗାଳି ଖାଇ ହୀନସ୍ତା ହେବେ ନାହିଁ। ସତେ ବାପ, ଏମିତି ଯଦି ହୁଏ ମୋର ଏହି ଅର୍ଜନତକ ସେହି କାମରେ ଲଗାଇବୁ ବାପ । ମୋ ଜାତିଏ ସୁଖରେ ରହିବେ--ଏ ଯେ ମୋର ସାରା ଜୀବନର ଦାନ ବାପ !" ବୁଢ଼ୀ ଆଉ କହିପାରିଲା

ନାହିଁ, ପ୍ରକମ୍ପିତ ଶୁଷ୍କ ଅଧର ଦୁଇଟି ତା'ର ଥରି ଥରି ଚିରଦିନପାଇଁ ବନ୍ଦ ହୋଇଗଲା।

ଠିକ୍ ସେତିକି ବେଳେ ଦାଣ୍ଡଦୁଆରେ ଡାକ୍ତର ମିଶ୍ରଙ୍କ କାର୍‌ର ହର୍ଣ୍ଣ ବାଜି ଉଠିଲା।



## ଅଶ୍ରୁ ତର୍ପଣ

ବଡ଼ବିଲ ଲୌହଖଣିରୁ ପ୍ରାୟ ପାଞ୍ଚ ମାଇଲ୍ ଦୂରରେ କେନ୍ଦୁଝର ଠାକୁରାଣୀ ପାହାଡ଼ । ଠିକ୍ ପାହାଡର ପାଦଦେଶରେ ଶ୍ୟାମ-ବନ ଭିତରେ ଗୋଟିଏ ଛୋଟ ପଲ୍ଲୀ,—ଚାରିଆଡ଼ ପାହାଡ଼ ଘେରା, ନାଆଁ ଟି ତାର ସୁଣ୍ଡ୍ରା । ନିକଟରେ ଗୋଟିଏ ପାହାଡ଼ୀ ଝରଣା ଅବିରାମ ଗତିରେ ବୋହି ଚାଲିଛି କୁଳୁ କୁଳୁ ତାନରେ, ସେଇ ସବୁଜ ପଲ୍ଲୀଟିକୁ କେଉଁ ଅଜଣା ବନ୍ୟ ସଙ୍ଗୀତ ଶୁଣାଇ ......।

ପ୍ରକୃତିର ସେଇ ନଗ୍ନ ସୌନ୍ଦର୍ଯ୍ୟ ମଧ୍ୟରେ ତାଙ୍କର ନଗ୍ନକୁଟୀର-ଗୁଡ଼ିକ ଛିଡ଼ା ହୋଇଛନ୍ତି ମୁଣ୍ଡଟେକି—କେଉଁ ଅଜଣା ଯୁଗରୁ । ଗୋରୁ,ପଣ୍ଡା, ଛେଳି ସାଥିରେ ତାଙ୍କର ନିତ୍ୟ କାରବାର...। ! ବଡ଼ ସରଳ, ବଡ଼ ଖୋଲା ତାଙ୍କର ପ୍ରାଣ । ପଲ୍ଲୀପ୍ରାନ୍ତରେ ଠିକ୍ ପାହାଡ଼ ତଳକୁ ଲାଗି ଖଣ୍ଡିଏ ଘାଇଭରା କୁଞ୍ଜ । ସଞ୍ଜ ହେଲେ ସେମାନେ ଗୀତ ଗାଇ ନାଚନ୍ତି ସେଇଠି—ମାଦଳର ପ୍ରତି ତାଳରେ ପାଦ ମିଳାଇ ।

ସେଇଠି, ସମସ୍ତେ ବସି ପ୍ରାଣଖୋଲା ଗାଆନ୍ତି କେଉଁ ଅପୂର୍ବ ଭାଷାର ମଧୁର ସଙ୍ଗୀତ,-ମଝିରେ ଜଳୁଥାଏ ଶୁଖିଲା କାଠର ନିଆଁ । ସେଇ ଆଲୋକରେ ତାଙ୍କର ଆନନ୍ଦ । ସବଳ ସୁନ୍ଦର ନଗ୍ନ କଳାଦେହ ଉପରେ ଆଲୁଅର ରଶ୍ମି ପଡ଼ି ଆହୁରି ସୁନ୍ଦର ଦେଖାଯାଏ । ସେ ଉତ୍ସବରେ କେହି ବାଦ୍ ରହନ୍ତି ନାହିଁ । ତରୁଣ-ତରୁଣୀ ଦଳ ମଧ୍ୟ ନାଚନ୍ତି, ଗାଆନ୍ତି—ଅବାଧରେ, ସରଳ ଓ ମୁକ୍ତ ପ୍ରାଣରେ ।

ଏହିପରି ଭାବରେ ତାଙ୍କର ଦିନ କଟିଯାଏ, ଦିନ ପରେ ଦିନ —ରାତ ପରେ ରାତ ।

ଦିନେ ବଣାଇ ସୀମାର ଏକ ପାହାଡ଼ୀ ଗାଁରୁ ଆସିଲେ ଆଉ ଦଳେ ସେଇ 'ହୋ' (କୋହ୍ଲ) ଜାତିର କେତେ ସ୍ତ୍ରୀ ଆଉ ପୁରୁଷ । ନିର୍ଜନ ପଲ୍ଲୀଟି ନୂତନ ଅତିଥିଙ୍କର ଆଗମନରେ କୋଳାହଳ-ମୁଖର ହୋଇ ଉଠିଲା ।

ସେଦିନ ରାତରେ, ନୂତନ ଅତିଥିଗଣଙ୍କର ହେଲା ପୂର୍ଣ୍ଣ ଅଭ୍ୟର୍ଥନା । 'ହାଣ୍ଡିଆ'ର ତୀବ୍ର ଗନ୍ଧରେ କୁଞ୍ଜଟି ମହକି ଉଠିଲା, ଆଉ ତାଙ୍କର ମାଦଳର ତାଳରେ ଓ ନୃତ୍ୟଗୀତର ଛନ୍ଦରେ ବନର ସେଇ ଶ୍ୟାମ ବୃକ୍ଷଲତାର ପତ୍ରରେ ପତ୍ରରେ ଏକ ଅପୂର୍ବ ଶିହରଣ ଖେଳିଗଲା ।...ଅପୂର୍ବ ଛନ୍ଦରେ ଦୋହଲି ଉଠିଲା ତାଙ୍କର ସୁଗଠିତ ନଗ୍ନ କଳାଦେହ ଗୁଡ଼ିକ,...ପ୍ରାଣତନ୍ତ୍ରୀରୁ ଝଙ୍କାରି ଉଠିଲା ତାଙ୍କର ଏକ ଅପୂର୍ବ ଭାଷାର ମଧୁର ସଙ୍ଗୀତ ।

—'ବିଜୟ ! ଏଇ ଚିର-ଶ୍ୟାମଳ ପ୍ରକୃତି ରାଜ୍ୟର ଶ୍ୟାମଳ ଯୁବକ, ନୀରବରେ ଗୋଟିଏ କୋଣରେ ଛିଡ଼ାହୋଇ ଦେଖୁଥିଲା—ନୂତନ ଅତିଥିଗଣଙ୍କୁ । କେଉଁ ଅଜଣା ଆନନ୍ଦରେ ତା'ର ସୁନ୍ଦର ଶ୍ୟାମଳ ଦେହଟି ଫୁଟି ଦିଶୁଥିଲା—ଅଦ୍ଭୁତ ସୁନ୍ଦର ହୋଇ । ଲମ୍ବା, କୁଞ୍ଚିକୁଞ୍ଚିଆ ବାଳ କାନ୍ଧ ଉପରେ ପଡ଼ିଛି ।—ମୁଣ୍ଡରେ ବନ୍ଧା ହୋଇଛି ଗୋଟିଏ ବଣୁଆ ସବୁଜଲତା,—ଆଉ ସମ୍ମୁଖରେ ସେହି ଲତା ଦେହରେ ଖୋସା ହୋଇଛି—ଉଦଳିଆ ଚଢେଇର ଗୋଟିଏ ପର । ତାର ବାଁ ହାତରେ ଗୋଟିଏ ଧନୁ—ଆଉ ଆର ହାତରେ କେତୋଟି ତୀର ।

ଯେଉଁଥର ଚମ୍ପୂଆ ଶିବଶଙ୍କି ଯାହାକୁ କୃଷ୍ଣବାବୁଙ୍କ ଥିଏଟର ଆସିଥିଲା। ବଜସ୍ତ୍ର ସେଇଠୁ ଗୀତ ପଦଟିଏ ଶିଖି ଆସିଥିଲା,— ଗାଇଲା,......

'ଏହି ଲିଙ୍ଗରାଜଙ୍କ ଦେଉଳ —'
ଆମ ବାପ ଦାଦାଙ୍କର ବନ୍ଧାଣି ପଣିଆ,
ଦେଖିଯାଆ, ଥରେ ଦେଖିଯାଆ।"

ସୁର ତାର ବଡ଼ ମଧୁର। ଆଖ ପାଖ ଗାଁରେ ତା'ପରି କେହି ଗାଇ ପାରନ୍ତି ନାହିଁ। ତେଣୁ ତାକୁ ସମସ୍ତେ ଭଲ ପାଆନ୍ତି— ଚାହାନ୍ତି।

ବଜସ୍ତ୍ରର ହଠାତ୍ ଦୃଷ୍ଟି ପଡ଼ିଲା ସରଯୂ ଉପରେ। ସରଯୂ ସୁନ୍ଦରୀ, ତରୁଣୀ—ନୂତନ ଅନ୍ତଥିଙ୍କ ଦଳରେ ଆସିଛି—ଖଣିରେ କାମ କରିବ ବୋଲି। ବଡ଼ ସୁନ୍ଦର ନାଚେ। ମାଦଳର ତାଳେ ତାଳେ ତାର ଚଞ୍ଚଳ ଚରଣର ଲୀଳାୟିତ ଭଙ୍ଗୀ ଓ ଉନ୍ନତ ବକ୍ଷର ମୃଦୁ କମ୍ପନ ବଜସ୍ତ୍ରର ତରୁଣ-ପ୍ରାଣରେ ଏକ ନୂତନ ଅଜଣା ପରଶ ଆଣି ଦେଉଥିଲା।

ସରଯୂର କୋମଳ ପ୍ରାଣ-ତନ୍ତ୍ରୀରେ ସେଇ ଶ୍ୟାମଳ ସୁନ୍ଦର ବଳିଷ୍ଠ ଯୁବକର ସଙ୍ଗୀତର ମୂର୍ଚ୍ଛନା ଝଙ୍କାର ଉଠୁଥିଲା। ସେ ଆଶ୍ଚର୍ଯ୍ୟ ହୋଇ ଗୁହଁ ରହିଥିଲା—ବଜସ୍ତ୍ର ଆଡ଼କୁ। କିନ୍ତୁ ବଜସ୍ତ୍ର ତାହା ଦେଖି ମୁହଁ ବୁଲାଇ ନେଲା।...ସରଯୂ ତା ପାଖକୁ ଚୁଲି ଆସିଲା, ଆଉ ବଜସ୍ତ୍ରର ବଳିଷ୍ଠ ହାତ ଦୁଇଟିକୁ ଧରି କହିଲା— 'ନାଚିବୁ—ମୋ ସାଥିରେ!'

ରଜସ୍ୱ ବରକ୍ତରେ ହାତ ଛଡ଼ାଇ ନେଇ 'ନାଇଁ, ମୁଇଁ ନାଚିବ ନାଇଁ' କହି ଚାଲିଯାଉଥିଲା ସେଠାରୁ, ସରଯୂ ହଠାତ୍ ତାର ହାତଟି ଧରି ପକାଇ କହିଲା, 'ଅମେ ଅଜ ଅସିଛୁ, କାଲି ଯିମୁ; ନାଇଁ କରୁଛୁ କମାଇଁ – ଅୟୁ ।'

ରଜସ୍ୱ ରାଜି ହେଲା ନାହିଁ, ହାତ ଛୁଆଁଡ ଦେଇ ଦୂରକୁ ଚାଲିଗଲା । ସରଯୂ ଫେରିଗଲା, – ତାର ଚିକ୍‌ଣ କଳା ଚପଳ ଆଖି ଦୁଇଟିରେ ମୁକ୍ତା ପରି କେଇ ବିନ୍ଦୁ ଉଚ୍ଛଳିଲା ଲୁହ ଧରି । କିନ୍ତୁ ସେ ତ ଜାଣେ ନାହିଁ, – ରଜସ୍ୱ କପରି କୌଣସି ସ୍ତ୍ରୀଲୋକ ସାଥିରେ ଅଧୌ ମିଳାମିଶା କରେ ନାହିଁ । ସେ କେବଳ ନିଜର ଧନୁ ଓ ତୀର କେଇଟି ଧରି ହରଡ଼ ଚଡେଇ ଓ ଠେଲୁଆ (ଶଶା) ଶିକାର କରିବାରେ ବ୍ୟସ୍ତ ଥାଏ ।

ପରଦିନ । ସରଯୂ ଝରଣା ବକ୍ଷରୁ ପାଣି ନେବାକୁ ଅସିଥାଏ ଚଞ୍ଚଳ ଯୌବନର ପୂର୍ଣ୍ଣ ଶୋଭା ତାର ପ୍ରତି ଅଙ୍ଗପ୍ରତ୍ୟଙ୍ଗରେ ଫୁଟି ଉଠୁଛି । ଦେହରେ ପିନ୍ଧିଲା ଲୁଗାଟି ସବୁ ଅଣ୍ଟାରେ ବେଢ଼ାଇ ଦେଇଛି । ପ୍ରକୃତିର ଅନାବିଳ ରାଜ୍ୟର ନଗ୍ନକୁମାରୀ । କାହିଁକି ବା ସଂକୋଚ କରିବ ସେ, କାହାକୁ ବା କରିବ ! ଅଜ ଯେପରି ସେ ସରଗର କୃଷ୍ଣ-ଅପ୍‌ସରୀ ପରି ଦିଶୁଛି । ହଠାତ୍ ସରଯୂ ଚୁଲି-ପଡ଼ି ଦେଖିଲା – କିଛି ଦୂରରେ ରଜସ୍ୱ ମୁହଁ ଧୋଉଛି ।

ସରଯୂ କାଖରୁ କଳସୀଟି ଓହ୍ଲାଇ ବାଲି ଉପରେ ରଖିଦେଇ ରଜସ୍ୱ ପଛଅଡେ ବଢ଼ି ପଡ଼ିଲା ଯାଇ – ଗୋଟିଏ ଛୋଟ ପଥର ଉପରେ ଖୁବ୍ ଧୀରେ,···ପାଦ ଟିପି ଟିପି··· ।

ରଜସ୍ୱ ପଛକୁ ଫେରି ଦେଖିଲା ସରଯୂ ।

ବିରକ୍ତିରେ ତାର ମୁହଁ ଲାଲ ହୋଇ ଉଠିଲା, ମୁଣ୍ଡର ବାଳ ଗୁଡ଼ିକ ସଜାଡୁ ସଜାଡୁ କହିଲା, 'କିସ' ସରଯୂ ହସି ହସି କହିଲା, 'ଉଡେ ଦେଖିଡେ—। ବିଜୟ କିଛି ନ କହି ଗୃଲି ଯାଉଛି ଦେଖି,ସରଯୂ କହିଲା—'ତୋର ନାଁ କିସ ?'

—'ମୋର ନାଁ କିଛି ନାଇଁ—

—'କିପାଇଁ, ନାଁଟା କହିଁଦେଲେ କି ତୋର ସରିପିବ ।

'ଅଚ୍ଛା, ଥରେ କହି ଦେଉଛି, ବାକି ଆଉ କେବେ କହିବି ନାଇଁ, —ବାଜାୟ (ବିଜୟ)' —

—'ଏଃ ସଡେ ତ ତୋର ନାଁଟା ବଡ଼ ସୁନ୍ଦର' କହି ସରଯୂ ଉଚ୍ଛ୍ୱଫୁଲ ହୋଇ ଉଠିଲା ।

ବିଜୟ ଦୁଇଗୃରି ପାଦ ଅଗେଇ ଆସିଲା । ତାହା ଦେଖି ସରଯୂ ଧାଇଁଗଲା ଶ୍ରେଷ୍ଠ ଚପଳା ବାଳିକାଟି ପରି—ହସି ହସି କହିଲା, "ବାଜାୟ, ତୁଇ ମୋର ନାଁ ଜାଣିବୁ ନାଇଁ ।

—'ଦରକାର ନାଇଁ, ବାଟ ଛାଡ଼'... ।

ସରଯୂର କରୁଣ ଗୃହାଣୀରେ ଏକ ବ୍ୟର୍ଥ ଆଶାର ଭାବ ଫୁଟି ଉଠୁଥିଲା । ସେ ପୁଣି ହସି କହିଲା,—'ନାଇଁ ତୁଇ ଯାଅ ନାଇଁ, ତୋତେ ମୁଇଁ ଛାଡ଼ିଦେବି ନାଇଁ—'

ବିଜୟ ବୁଲିପଡ଼ି ଛୁଟାଦେଲା । ସରଯୂ ହଠାତ୍ ତାକୁ ତାର ଶଙ୍କିତ କଲା ମୃଣାଳ କୋମଳ ବାହୁଲତାରେ ଭିଡ଼ିଧରି ଅତି ଧୀରରେ ଅଗ୍ରହାନ୍ୱିତ ହୋଇ କହିଲା—'ମୋର ନାଁଟା ଶୁଣିବୁ

ନାହିଁ—'

କଥା ତା'ର ଶେଷ ହେଲନାହିଁ, ବିଜୟ ତାକୁ ଠେଲିଦେଇ ଗ୍ରୁଲିଗଲା ···ଆଜ ସରଯୁ, କେତୋଟି ବଣ ମଲ୍ଲୀଫୁଲ ଓ ପତର ଝୁଣ୍ଡାଇ ମୁଣ୍ଡରେ ଖୋସିଲା ଓ ପରକ୍ଷଣରେ ସେଗୁଡ଼ିକ ଟାଣି ଛିକ ଛିକ କରି ଝୁଣ୍ଡାଇ ଫୋପାଡି ଦେଲା । ଅଜାଣତରେ ତା'ର ବୁକୁର କେଉଁ ଗୋପନ ପ୍ରଦେଶରୁ ଏକ ବ୍ୟଥାଭରା ଦୀର୍ଘ ନିଶ୍ୱାସ ଅଜ୍ଞାତ ହୋଇ ବାହାରି ପଡ଼ିଲା ।

ସେଇଦିନ ସନ୍ଧ୍ୟାରେ—ନାଚ ହେଉଥିଲା । ସରଯୁ ବିଜୟକୁ ସେଠାରେ ଖୋଜିଲା, ମାତ୍ର ପାଇଲା ନାହିଁ । ବିଜୟ ସେତେ-ବେଳକୁ ପାହାଡରେ ବସି ତା'ର କେଉଁକାଳିଆ ବାଉଁଶ ବଇଁଶୀଟି ବଜାଇ ଗୀତ ଗାଉଥାଏ । ସରଯୁ ଶୁଣିଲା ତା'ର ଗୀତ ପଦେ ପଦେ ଜୀବନ୍ତ ହୋଇ ଫୁଟି ଉଠୁଥିଲା ତା'ର ବୁକୁର ପ୍ରତି ହୃତ୍ସ୍ପନ୍ଦନରେ······। ଗୀତ ବନ୍ଦ ହେଲା । ଆଖି ପୋଛୁ ସରଯୁ 'ହି ହି' ହୋଇ ହସି ଉଠିଲା, ଠିକ୍ ତାହାରି ପଛପାଖରେ ।

ବିଜୟ ରାଗି ନିଆଁ ହୋଇଗଲା । ସେ ଭାବିଲା ତା' ନିକଟକୁ ସରଯୁ ବାରମ୍ବାର ଆସୁଛି କାହିଁକି ? ବିଜୟ ଏମିତ କ'ଣ କରିଛି ତା'ର ? ଯାହାପାଇଁ ସରଯୁ ସବୁବେଳେ ଗ୍ରୁଲିଆସେ ତା' ପାଖକୁ କେବଳ ତାହାରି ମୁହଁରୁ କଥା ଦି'ପଦ ଶୁଣିବା ପାଇଁ ।

ସରଯୁ ବିଜୟର ପିଠି ଉପରେ ନଇଁପଡ଼ି ହସି ହସି କହିଲା, ଏଇଟା କ'ଣ ତୋର ଗୀତର ଠିକ୍ ସୁର—"

'ହୁଁ,—କିପାଇଁ—?'

'ଆଦୌ ଗାଇ ଜାଣିନୁ ନାଇଁ—।'

'ତ, ସେଥିରେ ତୋର କ ଗଲା— ? ତତେ ଏ କଥା କହିବାକୁ କଏ ଡାକଯାଇଥିଲା—?" କହି ବଜସ୍ତୁ ଛୁଡ଼ା ହୋଇ ପଡ଼ିଲା ।

ପଡୁ ପଡୁ ରହିପାଇ ସବଯୁ ପୁଣି ହସି କହିଲା,—'ନ ଡାକଲେ କଣ ଆସିବାକୁ ମନା ଅଛି—?'.

ସରଯୁ ତା'ର ମିନତିଭରା କରୁଣ ଗୃହାଣୀ ଓ କମ୍ପିତ ଅଧର ଦୁଇଟି ତୋଳିଦେଲା ବଜସ୍ତୁର ଆଖି ଆଗରେ । ବଜସ୍ତୁର ଶୁଷ୍କପ୍ରାଣ କନୁ ଏ ସବୁ ବୁଝି ପାରିଲା ନାହିଁ,—ସ୍ୱଗରେ ଗର ଗର ହୋଇ କହିଲା,—'ଯା, ତୁ ମୋ ପାଖକୁ ଆଉ ଆସିବୁ ନାହିଁ, ତୁ ଆସିଲେ ଦିନଟାଯାକ ମୋର କିଛି କାମ ହୁଏ ନାହିଁ.—ଶୀକାର ପାଏ ନାହିଁ ଆଦୌ ।'—ବଜସ୍ତୁ ଦେଖିଲା ସରଯୁ ଗୁଲି ଯାଉଛି ।

ସରଯୁ ଯାଇ ବସିଲା ପାହାଡ଼ର ଗୋଟିଏ କୋଣରେ । ତା'ର ଦୁଇଟି ସୁଗୋଲ କଳା ଗାଲ ଉପରେ ବୋହିଗଲା – ତପ୍ତ ଅଶ୍ରୁର ଦୁଇଟି କ୍ଷୀଣ ଧାରା ।

ସରଯୁ ଗୁଲିଯିବାର ଦେଖି ବଜସ୍ତୁ ପ୍ରାଣରେ କାହିଁକ ଏକ ଅଜଣା ଚେଷ୍ଟ ଲାଗିଲା । ସେ କିଛି ବୁଝି ପାରିଲା ନାହିଁ, – ତା'ର ବୁକୁ ଯେପରି ସେହି ଅଜଣା ବ୍ୟଥାରେ ବ୍ୟଥାତୁର ହୋଇ ଉଠିଲା । ସେ ଭାବିଲା – ଆଉ କ'ଣ ସରଯୁ ଆସିବ ନାହିଁ ତା'ନାକଟକୁ !

ବଜସ୍ତୁର ଦିନ ବ୍ୟଥାରେ ଘନାଇ ଆସେ । ତରଳ ଅନ୍ଧାରେ କମାଟ ବାନ୍ଧିଯାଏ ।

ବଳୟ୍ଯୁ ଶେଷରେ ବାଧ୍ଯହୋଇ ଧରାଦେଲା ସରଯୂ ନିକଟରେ । କିନ୍ତୁ ସରଯୂର ମନେହେଲା, ସେ ଯେପରି ଧରାଦେଇ ମଧ୍ଯ ଧରାଦିଏ ନାହିଁ;—କିପରି ଏକ ଉଦାସଭାବ ତା'ର··· । ସରଯୂ ତା' ବୁକୁ ଉପରେ ମୁହଁ ରଖି କେତେ ପ୍ରାଣଖୋଲା କଥା କହୁଯାଏ—ବଳୟ୍ଯୁ ବାଧା ଦିଏ ନାହିଁ, କିନ୍ତୁ, ସରଯୂ ବେଳେ ବେଳେ ଦେଖେ ତା'ର ସାନ ସାନ ଆଖି ଦୁଇଟିରେ ପାଣି ଭରି ଉଠିଥାଏ— ଅକାରଣରେ । ସେ ବୁଝିପାରେ ନାହିଁ, କାହିଁକି ଏ ବ୍ୟଥା— ଏ ଶ୍ୟାମଳ ରାଜ୍ୟର ସ୍ୱାଧୀନ ବଳିଷ୍ଠ ତରୁଣର ?

ସେଦିନ ଶରତ ପୂର୍ଣ୍ଣିମା । ଭରା ଜୋଛନାରେ ପକ୍ଷୀ ଗାଁଟି ହସି ଉଠୁଥାଏ । ସବୁ ନୀରବ, ନିସ୍ତବ୍ଧ······କେବଳ ଧୁମୁସାର ତାଳ ଓ ଗୀତର ସ୍ୱର ଭାସି ଆସୁଥାଏ ସେଇ କୁଞ୍ଜ ଆଡ଼ୁ । ଏତିକି-ବେଳେ ସରଯୂ ଆସିଲା ବଳୟ୍ଯୁର ବୁକୁର ନିଭୃତ ପ୍ରଦେଶକୁ— ସବୁଜ ବନର ପଦ୍ମ ଫୁଲରେ ସବୁଜରାଣୀ ସାଜି ।

ବଳୟ୍ଯୁ କହିଲା, "ସରଯୂ ସତେ ତୁ ଏତେ ସୁନ୍ଦର— ?"

ସରଯୂ ତା' କାନ୍ଧ ଉପରେ ଭରା ଦେଇ କହିଲା, "ତା' କେବଳ ତୋରି ପାଇଁ - "

ବଳୟ୍ଯୁ ହଠାତ୍ ଚମକି ପଡ଼ି କହିଲା,—"ନା,ନା,ତା'ହୋଇ ପାରିବ ନାହିଁ ।"

"କ'ଣ ହେବ ନାହିଁ ବାଳାୟୁ—" କମ୍ପି ଉଠିଲା ସରଯୂର ଭୀତସ୍ୱର ।

"ତୋତେ ବାହା ହେବା···"

"କିପାଇଁ ବାଜାସ୍ତ ? ସରଯୂ ଅଟୁଥିଲା, ହଠାତ୍ ବିଜୟର ବୁକୁ ଉପରେ ମୁହଁ ରଖି କହିଲା, "କହିବୁ ନାହିଁ—"

ବିଜୟ ତା'ର କପାଳର ବାଳ ଗୁଡ଼ିକ ସଜାଡ଼ୁ ସଜାଡ଼ୁ କହିଲା-—"ତୋତେ ବାହା ହେବା କଥା ସେଦିନ ବାବା ଆଉ ମା'ଙ୍କୁ କହିଲି; କିନ୍ତୁ ବାବା କ'ଣ କହିଲା ଜାଣୁ ସରଯୂ—? ତୁମେ ପରି ଗୋଷରେ ଆମଠାରୁ ନୀଚ । ସେମାନେ ମୋତେ ଖୁବ୍ ବୁଝାଇଲେ ଖୁବ୍ ଗାଳି ଦେଲେ,—ଏ କଣ ! ସରଯୂ,···ସରଯୂ···"

ବିଜୟର କାତର ସ୍ୱରରେ ଚମକି ଉଠି ସରଯୂ ତା'ର ଅଶ୍ରୁପୂର୍ଣ୍ଣ ଚକ୍ଷୁ ଦୁଇଟି ଧରି କହିଲା 'ବାଜାସ୍ତ'—ତା'ର ଅଧର ଦୁଇଟି ଥରି ଉଠୁଥିଲା, ଗଳା ଧରି ଆସୁଥିଲା— ।

"କିସ,—କିସ କହୁଛୁ ସରଯୂ ?"

"ତେବେ ମୁଁ ଯାଉଛୁ—ବାଜାସ୍ତ !"

ବିଜୟ ସେଇ ମୂହୂର୍ତ୍ତରେ ତାକୁ ବୁକୁ ଉପରେ ଭିଡ଼ି ଧରିଲା, ତା'ର ହାତ ଦୁଇଟି ନେଇ ଅଜସ୍ର ଚୁମ୍ବନରେ ଭରି ଦେଲା । ବ୍ୟାକୁଳ ହୋଇ କହିଲା, "ଶୁଣ୍ ସରଯୂ, ତେବେ ମଧ୍ୟ ଦମ୍ଭରେ ବାବାକୁ କହି ଆସିଛି ଯେ ମୁଁ ତୋତେ ବାହା ହେବି ।"—ସରଯୂ ଆଉ କିଛି କହିପାରିଲା ନାହିଁ, ବିଜୟର ଏ ପଦକ ଦଥାରେ ତା'ର ହୃଦୟର ଗଭୀରତମ ପ୍ରଦେଶରୁ ଏକ ହତାଶ ଆନନ୍ଦ ବାହାରି ପଡ଼ିଲା—ଅଶ୍ରୁରୂପରେ । ସେ କାନ୍ଦି କାନ୍ଦି ବିଜୟ କୋଳରେ ଶୋଇ ପଡ଼ିଲା ।"

'ସରଯୂ'—ବିଜୟ ପ୍ରକୃତସ୍ଥ ହୋଇ ଡାକିଲା ।

'ବାଜାସ୍ତ୍ର'—

ଦେବେ ଦେହଙ୍କୁ ଗୃହେ ହସି ପକାଇଲେ ।

ବିଜୟ କିନ୍ତୁ ବିବାହ କରିବା ଆଗରୁ, ସରଯୂ ପ୍ରକୃତ ଗୁଲିଗଲେ ସତର ମାଇଲ ଦୂରର 'ଲହାଖେଣିକୁ—ନୁହାମ୍ବର୍ଣ୍ଣିକୁ ସରଯୂ ଗୋଟିଏ ବଙ୍ଗାଳୀ ବାବୁ ଘରେ କାମ ପାଇଲା । ଯାହାର କାମ କରୁଥିଲା ସେ, ତା'ର ଆଉ କେହି ନାହାଁନ୍ତି—ବାବୁ ଏକୁ-ଟିଆ । ସରଯୂ ଶ୍ୟାମଳା, କିନ୍ତୁ ସୁନ୍ଦରୀ ତରୁଣୀ । ବାବୁ ସରଯୂକୁ ଆପଣାର କରି ନେବାକୁ ଚାହେଁ—ସରଯୂ ତାହା ବୁଝି ପାରେ—ନିଜକୁ ଧରିଦିଏ ନାହିଁ,—ଦୂରରେ ଥାଇ ଯତ୍ନ କରେ । ସରଯୂ ସୁଖରେ ଥାଏ । କେବେ କେବେ ମଝି ରାତିରେ ତା'ର ନିଦ ଭାଙ୍ଗିଯାଏ, ସେ ଯେପରି ବିଜୟର କରୁଣ ସଙ୍ଗୀତର ସୁର ଶୁଣିବାକୁ ପାଏ । ବ୍ୟଥାରେ ତାର ବୁକୁ ଆକୁଳ ହୋଇ-ଉଠେ, ହୃତ୍ ସ୍ପନ୍ଦନର ଗତି ଦୁଇଗୁଣ ବଢ଼ିଯାଏ । ବାହାରର ମୁକ୍ତ ନୀଳଆକାଶକୁ ଗୃହେ ଭାବେ—'ବିଜୟ ଏତେବେଳେ କ'ଣ କରୁ-ଥିବ, ସେ କ'ଣ ଭୁଲିଯାଇଛି ସରଯୂକୁ ?'—ବିଜୟ ହୁଏତ ସାରାରାତି ଉଜାଗର ରହି ଭାବୁଛି ତାହାରି କଥା—ଠିକ୍ ତାହାରି-ପରି । ପୁଣି ସେ ଶୋଇପଡ଼େ— କିନ୍ତୁ ତାର ପ୍ରାଣରେ ବିଜୟର କଥା—ବୁକୁ ଭିତରେ ବିଜୟର ଗୀତର ସୁର, ସ୍ମୃତିର ଶେଷ ପରଶଟିକ ପରି ଜାଗି ରହିଥାଏ ।

ଏଣେ 'ସରଯୂହୀନ' ବିଜୟ ପାହାଡ଼ର ବୃକ୍ଷବକ୍ଷରେ ଲକ୍ଷ୍ୟହୀନ ହୋଇ ବୁଲୁଥାଏ । ସାରାଦିନ ସରଯୂ ଯେଉଁଠି ବସୁଥିଲା, ସେଇ-ଠାରେ ଯାଇ ବସେ । ସରଯୂର ଭାଷା ଯେପରି ଶୁଣିବାକୁ ପାଏ

ସେଇଠି – ତା'ର ବିଶ୍ୱାସ, ସରଯୂ ପୁଣି ଫେରିଆସିବ ତା'ର ନିକ-ଟକୁ – ଅତି ନିକଟକୁ – ବୁକୁ ଉପରକୁ । ବିଜୟର ଦୈନନ୍ଦିନ ଜୀବନ ମରୁମୟ ହୋଇ ଉଠିଲା – ସରଯୂ ନିକଟରେ ସେ ସମ୍ପୂର୍ଣ୍ଣ ଭାବରେ ଧରା ନ ଦେଇଥିଲେ ମଧ୍ୟ । କିନ୍ତୁ ସରଯୂ ତ ଚାହେଁ ବିଜୟକୁ – ନିଷ୍ଠୁରଭାବରେ ଚାହେଁ – ତା'ର ସମସ୍ତ – । ସରଯୂ ତାକୁ ପ୍ରଥମରେ ପାଇଲା ନାହିଁ ସତ – ଶେଷରେ କିନ୍ତୁ ତାକୁ ପାଗଳ କରି ଦେଲା ।

ଦିନପରେ ଦିନ, ରାତି ପରେ ରାତି ପାଣି ସୁଅପରି ବୋହି ଚାଲିଗଲା । ସରଯୂ ଆଉ ଫେରିଲା ନାହିଁ ।

ବିଜୟକୁ ଆଉ କିଛି ଭଲ ଲାଗିଲା ନାହିଁ । ସେ ସ୍ଥିର କଲା ଯିବ ସରଯୂ ନିକଟକୁ, ତାକୁ ଫେରାଇ ଆଣିବ ଏହି ଶରଣ୍ୟାମ ପାହାଡ଼ର କୋଳକୁ । ଉଚ୍ଛୁଳତାର ସ୍ମୃତିରେ କଟାଇ ଦେବେ ସାରାଦିନ – ଆଉ ରାତି ଯାକ ସେମାନେ କଟାଇ ଦେବେ – ପରସ୍ପରର ବୁକୁରେ ମୁହଁଟିମାନ ଲୁଚାଇ – ।

ବିଜୟ ଆସିଲା ନୁହାମୁଣ୍ଡିକୁ ତା'ର ବ୍ୟଥିତ ପ୍ରାଣ ଘେନି—ସରଯୂକୁ ଫେରାଇ ନେବାପାଇଁ । କିନ୍ତୁ ଦୀର୍ଘଦିନର ବ୍ୟବଚ୍ଛେଦ ଫଳରେ ସରଯୂ ତାକୁ ଭୁଲି ବୁଝିଥିଲା । ବିଜୟ ଆକୁଳ ଆବେଗରେ ଡାକିଲା – "ସରଯୂ ! ଚାଲ୍ – ଫେରି ଚାଲ୍ – "

"ତା' ହେବ ନାହିଁ ବାଜାୟୁ," ସରଯୂ କହିଲା ।

"ଏ କ'ଣ ସରଯୂ, କାହିଁକି ହେବନାହିଁ – ?" ବିଜୟ

ଜାଣିବାକୁ ଆଗ୍ରହ ପ୍ରକାଶ କଲା ।

"ତା' ତୁ ଜାଣୁ"—ସରଯୁ ସେପରି ପଥର ପାଲଟି ଯାଇଥିଲା ।

"ନା, ସରଯୁ,—ଆଉ କିଛି ହେବ ନାହିଁ—ମାଆକୁ ରାଜି କରାଇ ନେଇଛି, ତୁ ଚାଲ୍—"

ସରଯୁ ଗମ୍ଭୀର ଅଭିମାନରେ କହିଲା, "ନା,ତୁ ଫେରିଯାଅ, ଆଉ କାହାକୁ ବାହାହୋଇ ସୁଖରେ ରହ ।" ବିଜୟ ଆଉ କିଛି କହିଲା ନାହିଁ । ସେ ଫେରି ଚାଲିଗଲା ସେଇ ପାହାଡ଼ର କୋଳକୁ । ତା'ର ସଙ୍ଗୀତର ସୁର ଆହୁରି କରୁଣ ହୋଇ ଫୁଟି ଉଠିଲା । ଗଭୀର ରାତରେ ହଠାତ୍ ଯଦି କାହାର ନିଦ ଭାଙ୍ଗେ,ବିଜୟର ଗୀତ ଶୁଣିପାରେ ସେ । ତା'ର ଭ୍ରମ ହୁଏ, ସତେ ଯେପରି କିଏ ତାର ପ୍ରିୟର ବିରହରେ କାନ୍ଦୁଛି । କେବଳ ଗୋଟିଏ ଦୀର୍ଘ ନିଶ୍ୱାସ ପକାଏ, କଡ଼ ଲେଉଟାଇ ପୁଣି ଶୋଇପଡ଼େ ।

ଯେ ବିରହୀ ସେ କେବଳ ବସିଥାଏ ଗଭୀର ରାତରେ ତା'ର ପ୍ରିୟାର ପ୍ରତ୍ୟାଗମନ ଆଶାରେ; ପ୍ରିୟା ତା'ର ଆସେ ନାହିଁ— ହୁଏତ ସେ ଭୋଗବିଳାସରେ ଥାଏ; ସହରର ଆନନ୍ଦରେ ଆତ୍ମହରା ହୋଇ— । ତା'ର ପ୍ରିୟର ବ୍ୟଥା ତାକୁ ସ୍ପର୍ଶ କରିପାରେ ନାହିଁ ।

ସେହି ସବୁଜବନର ଅନ୍ତରାଳରେ ମହାମାରୀ ରୂପରେ ଦେଖାଦେଲା ଏକ ଉତ୍କଟ ରୋଗ 'ଧୁମା ଜର' । ବିଜୟର ସରଯୁ-ହୀନ ଜୀବନ-ପ୍ରଦୀପ ନିଭି ଆସିଲା ଧୀରେ ଧୀରେ ସେଇ 'ଧୁମା-ଜର'ର ପ୍ରବଳ ରୂପରେ । ସରଗର ପୂଜାଫୁଲ ପୂଜାରେ ଲାଗିଲା ନାହିଁ—ସୁନ୍ଦର ହୋଇ ଯେଉଁ ଫୁଲଟି ଫୁଟିଉଠିଥିଲା ଅକାଳରେ

ତାହା ନିଷ୍ଠୁର ଝଡ଼ରେ ଛିଡ଼ିଗଲା । ଖାଲି ତା'ର ଝଡ଼ା ପାଖୁଡ଼ା କେଇଟି ପାହାଡର ବୁକୁରେ ପଡ଼ି ରହିଲା କେତେଦିନ — !

ଖବର ପାଇ ସରଯୂ ଦୌଡ଼ି ଆସିଲା — ତା'ର ଶର-ଭୁଲର ସଂଶୋଧନ ପାଇଁ । ସେତେବେଳେ ବିଜୟ୍ ଆଉ ନାହିଁ । ବୁକୁଭାଙ୍ଗି ଚୂନା ହୋଇଗଲା ତାର । ପଥର ଉପରେ ସେ ନିସ୍ପନ୍ଦ ହୋଇ ବସି ରହିଲା । ସେତେବେଳେ ଜୋଛନାରେ ଚତୁର୍ଦ୍ଦିଗ ଉଦ୍ଭାସିତ, — ତା'ର ସେହି ଶରତ ପୂର୍ଣ୍ଣିମା ଦିନଟି କଥା ମନେ ପଡ଼ିଗଲା । — ନୀଳ ଆକାଶ ଆଡ଼କୁ ଚାହିଁ କରୁଣ ସ୍ୱରରେ କହିଲା, "ଦେବତେ ରହ, ମୁଁ ବି ଯାଉଛି — ପର ଜୀବନରେ ତୋର ସାଥୀ ହେବାପାଇଁ" ଗୋଲ କଳା ଶକ୍ ଶକଆ ଗାଲଉପରେ ତା'ର ଦୋହିପଡ଼ିଲା ମୁକ୍ତା ପରି କେତେ ବିନ୍ଦୁ ତପ୍ତ ଅଶ୍ରୁ ।

---

# ବିଦ୍ରୋହୀ ଶିଳ୍ପୀ

ଶ୍ୟାମରେଖା ଶବଳିତ ନୀଳ ସହ୍ୟାଦ୍ରି ପାହାଡଶ୍ରେଣୀଟି ଲମ୍ବି-ରହିଛି ପ୍ରାୟ ତିନି ଶହ ମାଇଲଯାଏ। ପଲ୍ଲୀପ୍ରାନ୍ତଟିରୁ ଶୀତଦିନିଆ ସକାଳେ ପାହାଡ଼ଟିର ଦୃଶ୍ୟ ଯେ ଥରେ ଦେଖିଥିବ, ଭୁଲି ପାରିବ ନାହିଁ ସହଜେ।

ବହୁଦିନ ତଳର କଥା, ସେତେବେଳେ ପାହାଡ଼ ଉପତ୍ୟକାଟି ଘନ ବନରେ ପୂର୍ଣ୍ଣଥିଲା। କେଉଁ ଯୁଗର ପୋଖରୀଟିଏ ଉପ-ତ୍ୟକାର ଏକମାତ୍ର ସମ୍ପଦ ଥିଲା। ପାଣି ତାର ଦ୍ରାକ୍ଷା ରସକୁ ସୁଦ୍ଧା ପଛକୁ ପକାଇ ଦେଉଥିଲା—ସ୍ୱାଦୁ ଗୁଣରେ। ସେହି ଶ୍ୱାପଦ-ସଙ୍କୁଳ ଉପତ୍ୟକାର ପଶ୍ଚିମ ପ୍ରାନ୍ତରେ ନାଜ୍ୟଇ ଶ୍ରେଣୀଟିଏ ଲମ୍ବିଯାଇଛି କିଛିଦୂର। ସେହି ଶ୍ରେଣୀଟିର ପ୍ରାୟ ଛଅଫୁଟ ତଳରେ ଗୋଟିଏ ବିସ୍ତୃତ ପ୍ରାକୃତିକ ଗୁହା—ପ୍ରକୃତିର ତାଜମହଲ!

ଏହି ନିର୍ଜନ ଗୁହାରେ 'ସେ' ତା'ର କାମ କରି ଚାଲି ଯାଉଥିଲା। ସେ ଥିଲା ଏକ ବିଶ୍ୱ-ଭାବୁକ ଓ କଳାଶିଳ୍ପୀ। ଭାବନା ତା'ର ଭାବ 'ତାଜ' ନିକଟରେ ଅବଦ୍ଧ। ତାହାର କାହାରିକୁ ଭୟ ଥିଲା ନାହିଁ—ଭୋକ, ଶୋଷ ସେ ଏକାବେଳକେ ଭୁଲିଯାଇଥିଲା। ତାହାର ଏ ପାହାଡ଼ ଶରୀରରେ ଦିନକ ପାଇଁ ହେଲେ ମୁଣ୍ଡବଥା ଦେଖାଦେଇ ନ ଥିଲା। କେବଳ ତା'ର ଲୁହାର ଛେଣୀଟି

ଗୋଟିଏ ଗତରେ ନିରନ୍ତର ଚାଲିଯାଉଥିଲା—ଠିକ୍, ଠିକ୍, ଠିକ୍।

ମୁହୂର୍ତ୍ତକ ପାଇଁ ହେଲେ କେବେ ଏହି ଶବ୍ଦ ତାଳଭଙ୍ଗ ହୋଇନାହିଁ। ଏହି ଠିକ, ଠିକ୍ ଶବ୍ଦର ସଂଯତ ତାଳଥିଲା ତା'ର ଜୀବନର ଶିରପ୍ରବାହୀ ସଙ୍ଗୀତ—ଯହିଁରେ ସେ ଆପଣାକୁ ଯୁଦ୍ଧା ହରାଇ ପକାଇଥିଲା। ଭୋକ ଲାଗୁଥିଲା ତ ବଣର ଫଳ ଅଭାବ ନ ଥିଲା। ଶୋଷ ହେଲେ ଉପତ୍ୟକାର ପୋଖରୀଟି ଥିଲା। ନିଦ ଆସୁଥିଲା ତ, ଦେଖାଇ ଦେଉଥିଲା ତା'ର କମନୀୟ କୋଡ଼—ସେହି ପ୍ରକୃତର ତାହି। ଯେତେବେଳେ ଜାଗ୍ରତ ହେଉଥିଲା, ତା'ର ସେହି ଚିରସାଥି ଛେଣୀ ଓ ହାତୁଡ଼ି ନେଇ ଅବଲମ୍ବେ ନିଜର ସର୍ବପ୍ରିୟ କାମରେ ଲାଗିଯାଉଥିଲା—ଠିକ୍, ଠିକ୍, ଠିକ୍। ତା'ର କଳା ବାଳ ଧଳା ହୋଇଗଲାଣି, ଦାନ୍ତ ଖସି ପଡ଼ିଲାଣି, ଚକ୍ଷୁର ଜ୍ୟୋତି କ୍ଷୀଣ ହେବାକୁ ଲାଗିଲାଣି—ତଥାପି ତା'ର ଛେଣୀଟି ସେହି ଏକ ଗତରେ ଚାଲିଯାଉଥିଲା—ଠିକ୍, ଠିକ୍, ଠିକ୍।

ଦିନ ପାଣି ସୁଅ ପରି ବୋହିଗଲା। ପରିଶେଷରେ ଦିନେ ତା'ର ଇଚ୍ଛା ପୂର୍ଣ୍ଣ ହେଲା। ସେହି ପାର୍ବତ୍ୟ ଉପତ୍ୟକାରେ ଗୋଟିଏ ଭାବପୂର୍ଣ୍ଣ ମୂର୍ତ୍ତିର ବିକାଶ ହେଲା। ମୂର୍ତ୍ତିର ନେତ୍ରରୁ ଯେପରି ସୌମ୍ୟଭାବ ଝରି ପଡୁଥିଲା; ଆଉ ମୁଖମଣ୍ଡଳ ଉପରେ ଗମ୍ଭୀର ହାସ୍ୟ ନୃତ୍ୟ କରୁଥିଲା। ଜଣାଯାଉଥିଲା, ସତେ କି ଏ ମୂର୍ତ୍ତି ଜୀବନ୍ତ ଅଛି।

ନୀରବ ଶିଳ୍ପୀ ଧନ୍ୟ ହେଲା, ତା'ର ହୃଦୟ ଆନନ୍ଦରେ ଉଛୁଳି ଉଠିଲା। ସେ ତା'ର ବୃଦ୍ଧାବସ୍ଥାକୁ ମଧ୍ୟ ଭୁଲିଯାଇ, ଶୈଶବର ସରଳ ଉତ୍ସୁକତାରେ ସେହି ମୂର୍ତ୍ତିକୁ ନିର୍ନିମେଷ ଦୃଷ୍ଟିରେ ଚାହିଁ

ବହିଲା । ମୂର୍ତ୍ତିରେ ଯେ ତା'ର କଳା ସଜୀବ ହୋଇ ଫୁଟି ଉଠିଛି !

ଦିନେ ତା'ର ଅନୁପସ୍ଥିତିରେ କେଇଜଣେ କାଠୁରିଆ ମୂର୍ତ୍ତିଟିକୁ ଆବିଷ୍କାର କଲେ । ମୂର୍ତ୍ତିଟିକୁ ବାରମ୍ବାର ଦେଖିସୁଦ୍ଧା ତାଙ୍କର ତୃପ୍ତି ଆସିଲା ନାହିଁ, ବରଂ ମନରେ ଭୟ ଓ ଭକ୍ତିର ସଞ୍ଚାର ହେଲା ।

କ୍ରମେ ଗ୍ରାମେ ଗ୍ରାମେ ରାଷ୍ଟ୍ର ହୋ'ଇଗଲା, ସନ୍ତୋଷପୁର ପାହାଡ଼ରେ ବନଦେବୀ ଆବିର୍ଭୂତ ହୋଇଅଛନ୍ତି । ଯେ ଯେଉଁଠି ଶୁଣିଲା, ଷଣେ ଥକ୍କାହୋଇ ଛିଡ଼ା ହୋଇଗଲା ।

ଗ୍ରାମେ ଗ୍ରାମେ ଭେଦା ଉଠିଲା । ଦେବୀଙ୍କ ପୂଜା ନିମନ୍ତେ ଚୋଦା ସଂଗ୍ରହ କରାଗଲା । ଦିନେ କେତେକ ଗ୍ରାମର ଲୋକ ମିଳି ଦେବୀଙ୍କ ପୂଜା ଉଦ୍ଦେଶ୍ୟରେ ଭୋଗରାଗ ଧରି ସେହି ବନସ୍ଥଳୀରେ ପହଞ୍ଚିଲେ ।

ଆଗନ୍ତୁକଗଣଙ୍କ କୋଳାହଳରେ ଆଜି ଚିରକାଳୀନ ଏକାନ୍ତ ନିର୍ଜନ ବନର ନୀରବତା ଭାଙ୍ଗିଲା । ବାଜା, ଶଙ୍ଖ, ଭେରୀ ସବୁ ଗମ୍ଭୀର ନାଦରେ ବାଜି ଉଠିଲା । ବନସ୍ଥଳୀ କମ୍ପି ଉଠିଲା । ପକ୍ଷୀଗଣ ଭୟାକୁଳ ହୋଇ ମଧୁର କଳରବ ପରିବର୍ତ୍ତେ ଆର୍ତ୍ତଧ୍ୱନି କରି ଉଡ଼ି ଗୁଲିଗଲେ । ସ୍ୱଚ୍ଛନ୍ଦ-ବିହାରୀ ମୃଗପଲ ବନରୁ ବନାନ୍ତରକୁ ଦୌଡ଼ି ପଳାଇଲେ । ଆଜି ଏହି ନିର୍ଜନ ବନରେ ହିଂସା ନାଚିଉଠିଥିଲା, କେବଳ ଭକ୍ତଙ୍କ ପାଇଁ ।

ମୂର୍ତ୍ତି ଉଦ୍ଦେଶ୍ୟରେ ପୂଜା, ଭୋଗ, ବଳି ଇତ୍ୟାଦି ଦିଆଗଲା । ନିରୀହ ପଶୁଗଣଙ୍କ ରକ୍ତରେ ପବିତ୍ର କଳା-ଉଦ୍ଭବ ସ୍ଥାନଟି ରଙ୍ଗିନ୍ ହୋଇ ଉଠିଲା । ଶିଳ୍ପୀ ଏସବୁ ଦୃଶ୍ୟରେ ବିଚଳିତ ହେଲା

ସତ, କିନ୍ତୁ ବାର୍ଦ୍ଧକ୍ୟ ହେତୁ କର୍ମୀର ହସ୍ତରେ ମନୁଷ୍ୟ ସମାଜ ବଢୁଥିବା ହାତୁଡ଼ି ଠେକି ପାରିଲା ନାହିଁ ।

ସେ କେବଳ ସେହି ନିର୍ଜନ ଗୁହାରେ ବସି ଭାବେ, ମୂର୍ତ୍ତିର ଦର୍ଶନ ପାଇଁ ଏସବୁ କାହିଁକି ? ଜନତା ପୁଣି ସ୍ତୁତି ପ୍ରଣାମ କରନ୍ତି କାହିଁକି ? ବାଜା, ଭେରୀ, ଶଙ୍ଖ ଶବ୍ଦ କାହାପାଇଁ ? ଆରତି କାହିଁକି ? ମୂର୍ତ୍ତି ପାଦତଳେ ମୁଣ୍ଡ କାଟିବାକୁ ଏତେ ଆଡ଼ମ୍ବର ଓ ଭୋଗ-ରାଗ କାହିଁକି ? ନିରୀହ ପଶୁଗଣଙ୍କର ଦୋଷ କ'ଣ ? ମୂର୍ତ୍ତିର ହସ ହସ ମୁହଁଟି ଓ ପଦ୍ମଫୁଲ ପରି ଆଖି ଦୁଇଟି ସିନ୍ଦୁରରେ ଲଗାଇ ଦେଉଛନ୍ତି କାହିଁକି ? ହାୟରେ ଭକ୍ତ, ପୂଜକ ! ଧନ୍ୟ ତୁମ୍ଭର ଭକ୍ତି! ନିରୀହ ପ୍ରାଣୀଙ୍କୁ ହତ୍ୟା କରି, କଳାର ଧ୍ୱଂସ ସାଧନ କରି, ତୁମେ କର ପୂଜା ?

ଦିନେ ସୂର୍ଯ୍ୟାସ୍ତ ପୂର୍ବରୁ ଜଣେ ଦର୍ଶକ ମୂର୍ତ୍ତି ନିକଟକୁ ଆସି ପୂଜା, ଭୋଗ, ବଳି ଇତ୍ୟାଦି ସାରି ସନ୍ଧ୍ୟାଗମନ ଦେଖି ଘରକୁ ଫେରିବାକୁ ବସିଥାଆନ୍ତି, ହଠାତ୍ ଜଣେ ଶୃଙ୍ଖଳ ବୃଦ୍ଧ ପହଞ୍ଚି ପଚାରିଲେ,—"ତୁମେ କିଏ ?"

"ମୁଁ ଜଣେ ଭକ୍ତ ।"

"କଳାର ଭକ୍ତ ?"—

"କଳା ! କଳା କ'ଣ ?—କଳା ଫଳା ମୁଁ କିଛି ଜାଣେ ନାହିଁ ।"

"ଅଚ୍ଛା, ତେବେ କାହାକୁ ଭକ୍ତି କରୁଅଛ ?"

"ଦେବତାଙ୍କୁ—"

"ଦେବତା କିଏ ?—ସେ କାହିଁ ?"

ଦର୍ଶକ ବୃଦ୍ଧର ଏ ଧୃଷ୍ଟତାରେ ହଠାତ୍ ରାଗିଯାଇ କହିଲେ—"କିରେ ବୁଢ଼ା ! ତୋତେ କ'ଣ ଅଦୃଶ୍ୟ ହେଲାଣି କି ? ଦେଖୁ ନାହୁଁ, ସମ୍ମୁଖରେ କିଏ ଦେବତା !"

"ସୁନ୍ଦର ମୂର୍ତ୍ତି ......"

"କିଏ କହିଲା ।—ଏତ ସ୍ୱୟଂ ବନଦୁର୍ଗା ମାତା !"

"ଯାହାକୁ ତ ମୁଁ ଗଢ଼ିଛି,......ଏଇ ମୂର୍ତ୍ତି......!"

ନାସ୍ତିକ ! ଏତ ସ୍ୱୟଂ ବନଦୁର୍ଗା । ପାପୀ ତୁ, ଶୁଣୁ ନାହୁଁ ? କ'ଣ କେହି ମଣିଷ ଏପରି ଦେବତା କେବେ ଗଢ଼ିପାରେ ? କଳିକାଳରେ ପଥର ପାଲଟିଛନ୍ତି ବୋଲି ସିନା ତୁ ଏତେ ହେପି ଯାଉଛୁ ! —ତୁଚ୍ଛା ପାଗଳ ତୁ !"

ଶିଳ୍ପୀ କମ୍ପିତ ସ୍ୱରରେ କହିଲା, "—କ'ଣ, ମୁଁ ପାଗଳ,—ମୁଁ ପାପୀ ! ନାସ୍ତିକ,—ନାସ୍ତିକ !"

ସେହି ରାତିରେ ତାକୁ ନିଦ ହେଲା ନାହିଁ । ସେ କେବଳ ଭାବୁଥିଲା—"ସାରାଜୀବନ ମୋର ବଳିଦେଇ ମୁଁ କଲି କ'ଣ ? ନିରପରାଧ ପକ୍ଷୀଗଣଙ୍କୁ ଉଡ଼ାଇ ଦେଲି ! ପଶୁଙ୍କୁ ଘଉଡ଼ାଦେଲି ! ପ୍ରକୃତିର ସୌନ୍ଦର୍ଯ୍ୟ ଆଉ ଶାନ୍ତି ନଷ୍ଟ କଲି ! ନିରୀହ ପଶୁଗଣଙ୍କର ହତ୍ୟାକାରୀ ହେଲି !"

"ପକ୍ଷୀଗଣଙ୍କର କଳକୂଜନରେ ଶବ୍ଦାୟମାନ ଏହି ରମ୍ୟ ପ୍ରଦେଶକୁ ପ୍ରାନ୍ତର ଗଢ଼ାଇଲା କିଏ ? ମୂର୍ତ୍ତିର ଦର୍ଶନ ପାଇଁ ଏହି ଅଧିକାରୀ, ଅନଧିକାରୀ ମାନବ ଭେଦକୁ ସୃଷ୍ଟିକଲା କିଏ ? ଦେବତ୍ୱର

ବିଶାଳ କଳ୍ପନା, ସଙ୍କୁଚିତ ରୂପରେ ପ୍ରକାଶିତ ହେବାର କାରଣ କଏ ? ଏହି ସମସ୍ତ ବିଦ୍ରୋହ ମୂଳରେ କଏ ? ମୁଁ·····ମୁଁ !”

ସେ ଉଠିଲା, ହାତୁଡ଼ିଟି ଦୃଢମୁଷ୍ଟିରେ ଧରି ସେହି ମୂର୍ତ୍ତି-ପାଖକୁ ଗଲା ।

ଆଜି ସେ ଅଭ୍ୟାସରେ ମୂର୍ତ୍ତିକୁ ନିର୍ନିମେଷ ଦୃଷ୍ଟିରେ ଦେଖିଲା । ପରମୁହୂର୍ତ୍ତରେ ପୁଣି ଘୃଣାରେ ମୁଖମଣ୍ଡଳ ତା'ର ସଙ୍କୁଚିତ ହୋଇ ଉଠିଲା । କିନ୍ତୁ ମୂର୍ତ୍ତି ତ ଚିର ବିକଶିତ ଶତଦଳପରି ପ୍ରଫୁଲ୍ଲ ସଜୀବ ଜଣା ଯାଉଥିଲା । କିନ୍ତୁ ଶିଳ୍ପୀ ତା'ର ସର୍ଜକ, ପ୍ରତିଷ୍ଠାପକ, ଉପାସକ ଯେ, ସେ ଆଜି ତାକୁ ଶେଷଥର ପାଇଁ ଦେଖିବାକୁ ଆସିଛି ।

ବହୁ ସମୟ ଭାବି ଭାବି ସେ ତା'ର କଳ୍ପନା ଦୃଢ଼ କଲା । ହାତୁଡ଼ିଟି ଅତ୍ୟନ୍ତ ଦୃଢ଼ମୁଷ୍ଟିରେ ଧରି ଉପରକୁ ଟେକିଲା । ପର-କ୍ଷଣରେ ସେହି ବୃଦ୍ଧ ଶିଳ୍ପୀର ଏକ ସବଳ ଆଘାତ ମୂର୍ତ୍ତି ଉପରେ ପଡ଼ିଲା । ଗୋଟିଏ ଅଦ୍ଭୁତ ଶବ୍ଦ ଉଠି ବନସ୍ଥଳୀ କମ୍ପାଇ ଦେଲା ।

ମୂର୍ତ୍ତିର ମୁଣ୍ଡଟି ଭାଙ୍ଗି ତଳେ ପଡ଼ିଲା—ତା'ର ନିର୍ମାତା ଶିଳ୍ପୀକୁ ପ୍ରଣାମ କରିବାକୁ ।

ଘଟଣାର ପରଦିନ କେତେକ ଦର୍ଶକ ଆସି ଦେବତାଙ୍କ ଦୁର୍ଦ୍ଦଶା ଓ ନିକଟରେ ଗୋଟିଏ ହାତୁଡ଼ି ପଡ଼ିଥିବାର ଦେଖି, ଚିତ୍କାର କଲେ—"କେଉଁ ପାପିଷ୍ଠ ଦେବତାଙ୍କ ଶ୍ରୀଅଙ୍ଗ ନଷ୍ଟ କଲା ? ଠିକ୍ ପରମୁହୂର୍ତ୍ତରେ ଜଣେ ଦୀର୍ଘକାୟ ଶୁଭ୍ରଶ୍ମଶ୍ରୁ ଚଳାଏ ବୃଦ୍ଧ ଗୋଟିଏ ଗୁହାରୁ ବାହାରି ବଜ୍ରଗମ୍ଭୀର ସ୍ୱରରେ—'ମୂର୍ତ୍ତିର ସ୍ରଷ୍ଟା ହନ୍ତାରକ ମୁଁ କିନ୍ତୁ ଦେବତାର ନୁହେଁ' କହି ପୁଣି ଅଦୃଶ୍ୟ ହୋଇଗଲେ ।

ଦର୍ଶକଗଣ ଭୀତ ଓ ସନ୍ତ୍ରସ୍ତ ହୋଇ ସେହି ଗ୍ରାମରେ ସମସ୍ତ ବୃତ୍ତାନ୍ତ କହିଲେ ।

ସକାଳ ହେଲା । ଗ୍ରାମବାସୀଗଣ ଆସି, ଅତି ସାହସରେ ସେହି ଗୁମ୍ଫା ଭିତରେ ପଶି ଦେଖିଲେ—ଗୋଟିଏ ବୃଦ୍ଧ ବାବାଜୀର ଶବ ପଡ଼ିଛି, ଆଉ ତା ନିକଟରେ ଲୁହାର ଛେଣୀ, ଶ୍ଳେଷ ହାତୁଡ଼ି ଏବଂ ଆଉ କେତୋଟି ଯନ୍ତ୍ରପାତି ଇତଃସ୍ତତ ବିକ୍ଷିପ୍ତ ହୋଇ ପଡ଼ିରହିଛି ।

ଆଜି ସେ ଶିଳ୍ପୀ, ସେ ଭକ୍ତ, ସେ ଉପାସକ ନାହିଁ କି ସେ ମୂର୍ତ୍ତି ନାହିଁ । କେବଳ ଗୁମ୍ଫାଟି ପଡ଼ିଛି ତା'ର ଶରଣଦାନ ବକ୍ଷ ଦେଖାଇ, ଆଶ୍ରୟହୀନଙ୍କୁ ଆଶ୍ରୟ ଦେବାପାଇଁ—ଆଉ ସେହି କୁଞ୍ଜ ଭିତରେ ମାଟି ଘୋଡ଼ାଙ୍କ ଗହଳରେ ଫୁଟେ କି ଦେଡଫୁଟ ଉଚ୍ଚର ଏକ ସୌମ୍ୟ ବୃଦ୍ଧମୂର୍ତ୍ତି ପଡ଼ିରହିଛି । ଗାଁ ଲୋକେ କହନ୍ତି— "ଯେଉଁ ବାବାଜୀ ଠାକୁରାଣୀ ସ୍ଥାପନା କରିଥିଲେ—ଏ ସେହି, କଳିଯୁଗରେ ପଥର ହୋଇ ଯାଇଛନ୍ତି ।"

---

## ବରଦାନ ନା ଅଭିଶାପ

ଦୀର୍ଘ ଅବଗୁଣ୍ଠନ ତଳେ ଆକାଶର ସୁନୀଳ ଆଭା ଧୀରେ ଧୀରେ ଲୀନ ହୋଇ ଆସୁଥିଲା । ଆକାଶର ସେହି ଧୂସର ମେଖଳା ତଳେ ଧରିତ୍ରୀ ମାତା ଏକ ବିରହ-ବିଧୁରା ତରୁଣୀପରି ଉଦାସ ହୋଇ-ଉଠୁଥିଲା । ମିନିଏ ଟିକିଏ ଦମକା ବତାସ ସଙ୍ଗେ ସଙ୍ଗେ ଝିପିରି ଝିପିରି ହୋଇ ବର୍ଷା ଝରି ପଡ଼ୁଥିଲା । ଆଜି ସନ୍ଧ୍ୟାରାଣୀ ସେହି ବାରିବିନ୍ଦୁ ଗଳାରେ ବାହୁବେଷ୍ଟନ କରି ପଲ୍ଲୀ-ପ୍ରାଙ୍ଗଣରେ ଅଳସ ଗତିରେ ଅଗ୍ରସର ହେଉଥିଲେ । ଚତୁର୍ଦ୍ଦିଗରେ ଯେପରି ଏକ ଗମ୍ଭୀର ତନ୍ଦ୍ରା ବିରାଜିତ । ପଲ୍ଲୀପଥଗୁଡ଼ିକ ନିର୍ଜନ ହୋଇ ଉଠିଥିଲା—ବୃକ୍ଷ-ଶାଖାରେ ପକ୍ଷୀଗଣଙ୍କ ବିଶେଷ କୂଳକୂଜନ ମୁଖରିତ ହୋଇଉଠୁଥିଲା ଦିବାଲୋକର ଶେଷ ରଶ୍ମିଟିକୁ ବିଦାୟ ଦେବା ନିମନ୍ତେ ଏହା ସତେ ଯେପରି ଏକ କରୁଣ ବିଳାପ କିମ୍ବା ଶ୍ରଦ୍ଧାପୂର୍ଣ୍ଣ ବନ୍ଦନାଗାନ ! କିଏ ଜାଣେ, ପକ୍ଷୀ ହୃଦୟର ଏହା କେଉଁ ଗୋପନ କାହାଣୀ ।

ସେହି ଅନ୍ଧକାର ସମାଚ୍ଛନ୍ନ ସନ୍ଧ୍ୟାରେ ଲଖିଆ ବିଲ ରାସ୍ତାଧରି ଚାଲିଛି । ଦୁଇପାଖରେ କିଆବୁଦାର ଗହଳି ଅନ୍ଧକାରକୁ ଆଉ ଟିକିଏ ଘନୀଭୂତ କରିଦେଇଛି । ହଠାତ୍ ଆଗରେ ଗୋଧିଟାଏ ସଡସଡ଼ ହୋଇ ଚାଲିଗଲା । ଲଖିଆ ଚମକିଉଠି ଅନ୍ଧାରଟାରେ ଆଗକୁ ଯିବ କି ନାହିଁ ଭାବିବାକୁ ଲାଗିଲା । କିନ୍ତୁ ତା'ର ସାନମାମୁଁର କଥା-ଗୁଡିକ ମନେ ପଡିଲାକ୍ଷଣି ପାଦ ତାର ଦ୍ୱିଗୁଣ ଉତ୍ସାହରେ ଆଗକୁ

ଅଗ୍ରସର ହେଲା । ବାପ ତା'ର ରେଙ୍ଗୁନ ଗଲେ ସେ ଭଲ ଲୁଗା ପିନ୍ଧିବ, ବାବୁ ପିଲାଙ୍କପରି ପାଠ ପଢ଼ିବ, ପୁଣି ମିଠାଇ ଖାଇବାକୁ କେତେଷ୍ଟ ପଇସା ପାଇବ । ସେମାନେ ଆଉ ଏପରି ଭୋକ ଉପାସରେ ରହିବେ ନାହିଁ ।

ସାନମାମୁଁ କଥା ଭାବୁଭାବୁ ସେ ଦାସବନ୍ଧ ଉପରକୁ ଉଠିଲା । ଜନ୍ହଜୁଡ଼ା ଉପରେ ଛିଡ଼ାହୋଇ ସନ୍ଧ୍ୟାର ଅନ୍ଧକାରାଚ୍ଛନ୍ନ ବିସ୍ତୃତ ସବୁଜ କ୍ଷେତ ଭିତରେ ସେ ତା'ର ବାପକୁ ଅନୁସନ୍ଧାନ କରିବାକୁ ଲାଗିଲା । ଜଳ ସେପାଖର ଗାଁ ଖଣ୍ଡିକ ନଡିଆ-କଅଁବଣର ଘନଶ୍ୟାମଳିମା ଭିତରେ ତା'ର ଅସ୍ତିତ୍ୱ ହରାଇ ଦେଇଛି । ଝିପିରି ଝିପିରି ବର୍ଷାରେ ଲଖିଆର ତାଳପକା ଲୁଗାଖଣ୍ଡିକ ତିନ୍ତିଗଲାଣି— ପାଦ ଦୁଇଟା କାଦୁଅରେ ଲଥପଥ ହୋଇଯାଉଛି ।

କ୍ଷେତ ମଝିରେ କେଉଁଠି ଜନମାନବର ଶବ୍ଦ ମଧ୍ୟ ନାହିଁ— ସନ୍ଧ୍ୟାରେ ପୁଣି ବିସ୍ତୃତ ଧାନକ୍ଷେତ ଭିତରେ କୁଆଡ଼େ ଯିବ ଭାବିପାରିଲା ନାହିଁ— ତା'ର ବାଳକହୃଦୟ ଭୟରେ କମ୍ପିଉଠିଲା । ଏଣେ ବାପ ତା'ର ଫେରିବାକୁ ବିଳମ୍ବ କଲେ ସବୁ ଭ୍ରଷ୍ଟ ହୋଇ-ଯାଉଛି—ଘରେ କୁଣୁଆ ଉପସ୍ଥିତ, କୁଣୁଆ ବୋଲି କୁଣୁଆ, ଏକାବେଳକେ ସାନମାମୁଁ, ରେଙ୍ଗୁନବାଲା ବାବୁ କାମ କରନ୍ତି । ଘରକୁ ଫେରିବା ଆଗରୁ ଯେ କୌଣସି ପ୍ରକାରେ ବାପକୁ ତା'ର ଏ ଖବରଟା ଦେବା ଦରକାର । ଘରେ ଖୁଦକଣାଏ ବି ନାହିଁ । ଏ ଅନାକାଙ୍କ୍ଷିତ ଦୁର୍ଦ୍ଦଶା ଯେ କେତେ ଲଜ୍ଜାଜନକ ଓ ଗୋପନୀୟ, ତାହା ବାଳକ ହେଲେ ମଧ୍ୟ ଆଜନ୍ମ-ଦରିଦ୍ର-ସନ୍ତାନ ଲଖିଆ ଭଲ-କରି ବୁଝିଥିଲା ।

ବନ୍ଧର ଉଞ୍ଚ ହୁଡ଼ା ଉପରେ ଛିଡ଼ାହୋଇ ଲଖିଆ ଖେତ ଆଡ଼କୁ ପୁଣି ଥରେ ତୀକ୍ଷ୍ଣଦୃଷ୍ଟି ପକାଇଲା । କୃଷ୍ଣ ଆକାଶ ତଳରେ ତାରାଫୁଟି ଦିଶିଲାଣି—ଅନ୍ଧକାର ଘନାଇ ଆସିଲାଣି । ଲଖିଆ ଆଉ ଧୈର୍ଯ୍ୟଧରି ରହିପାରିଲା ନାହିଁ । 'ବାବା'—'ବାବା' ବୋଲି ଥରକେତେ କୁହାଟ ମାରିଲା । ଧାନଖେତର ବୁକୁ ଉପରେ ତା'ର କୁହାଟର ପ୍ରତିଧ୍ୱନି ଖେଳିଉଠିଲା—'ବାବା,' 'ବାବା' । କିଛିକ୍ଷଣପରେ ଉତ୍ତର ଆସିଲା—'ଲଖିଆ କରେ" । ଆଉ ସେହି ଅନ୍ଧକାର ଭିତରେ ଗୋଟିଏ କ୍ଷୀଣ ଲାଲ-ଜ୍ୟୋତିରେଖା ଉଜ୍ଜ୍ୱଳ ଓ ସ୍ତିମିତ ହୋଇ ହୋଇ ଆଗେଇଆସିଲା । ଲଖିଆ ବୁଝିପାରିଲା—ବାପ ତାର ଏଥର ଆସୁଛି—ତା'ର ହାତର ନିଆଁ ବିଣ୍ଡିଟା ଜଳିଉଠୁଛି ।

ଲଖିଆର ବାପ ମଦନା, ଷାର ବେହେରା ସହିତ ଦୁଃଖ ସୁଖ ହେଉ ହେଉ ବନ୍ଧ ହୁଡ଼ା ଉପରେ ଉଠିଲା । ମଝିଆ ଗାମୁଛାଖଣ୍ଡିକ ମୁଣ୍ଡରେ ପାଗ ମରାହୋଇଛି,—କାନ୍ଧରେ କୋଦାଳ ଖଣ୍ଡିକ—ଆଉ ହାତରେ ନିଆଁ ବିଣ୍ଡିଟାଏ ପବନ ଲାଗି ଦପ୍ ଦପ୍ କରି ଉଠୁଛି । ଏଇ ଖାଲୁହୁଢ଼ାଲୁରୁ ଆଗରେ ପୁଣି ସଞ୍ଜ ଅନ୍ଧାରରେ ଲଖିଆକୁ ବନ୍ଧ ହୁଡ଼ାରେ ଦେଖି ମଦନା ରାଗି ଉଠିଲା—ସ୍ତ୍ରୀକୁ କେତେ କହିଲେ ବୋଲି ମାନିଲା ନାହିଁ, ଦେଖୁଛୁ ନା ଷାରଭାଇ, କେମିତି ଦର୍ଶାଟାରେ ଭନ୍ତ ହୁପନ୍ତିଛି ଏହି ଅନ୍ଧାରରେ—ଟିକିଏ ଡର ନାହିଁ । ଲଖିଆ ଷାରକୁ ଭଲକରି ଜାଣେ, ଆପଦ ବିପଦରେ ସେଇ ଏକା ସ୍ତ୍ରୀଙ୍କର ସାହାପଡ଼ି । ହେଲେ ମଧ୍ୟ ତା' ଆଗରେ ସବୁ ଖୋଲିକହିବା ଉଚିତ କି ନା ଭାବୁଭାବୁ ଛେପ ଢୋକି ସେ କହିଲା—'ବାବା, ସାନମାମୁଁ ଆସିଛନ୍ତି ?'

ମଦନା ଆଖି ଦୁଇଟା ଉପରକୁ ଟେକି ପଚାରିଲା—'ଏଁ କ'ଣ କହିଲୁ—କିଏ ଆସିଛନ୍ତି ?'

ଲଖିଆ କିଛି ନ କହୁଣୁ ବୀର କହିଲା - 'ତମ ଶଳା ଆସିଛନ୍ତି ହୋ ! କିରେ ଲଖି, ରଙ୍ଗାମର ଶନିକେଶନ ବାବୁ କି ?'

ଲଖିଆ ମୁଣ୍ଡ ହୁଙ୍ଗାରି ସମ୍ମତି ଜଣାଇଲା । ତା'ପରେ ପୁଣି ଥରେ ଟେଛପ ଚୋକ ବାପକୁ ତାର ଡାକିଲା । ମଦନା ସବୁ ବୁଝି ପାରୁଥିଲା । ତାର ନିରୁତ୍ତର ଭାବ ଦେଖି ବୀର ବେହେରାକୁ ମଧ୍ୟ ବୁଝିବାକୁ କିଛି ବାକି ରହିଲା ନାହିଁ—କିନ୍ତୁ ମୁହଁ ଖୋଲି କେହି କିଛି କହିପାରିଲେ ନାହିଁ ।

ମଦନା ନୀରବରେ ଧୀରେ ଧୀରେ ବନ୍ଧ ହୁଡ଼ା ଉପରୁ ଓହ୍ଲାଇ କିଆବଣ ଭିତରେ ଗୋହିରୀ ଧରିଲା । ଖେତ ମଝିରେ ବୀର ଆଉ ସେ କେତେ ଦୁଃଖସୁଖ ହୋଇ ଆସୁଥିଲେ—ଏଇଲାଗେ କିନ୍ତୁ ଦୁହେଁଯାକ ନୀରବରେ ଆଉ ଆଗପଛ ହୋଇ କେବଳ ଅଗ୍ରସର ହେଉଥିଲେ । ଜଗନ୍ନାଥ ସଡ଼କ ବଡ଼ ବରଗଛ ମୂଳରେ ପହଞ୍ଚି ମଦନା ଫେରି ବୀର ଆଡ଼କୁ ଚାହିଁ କହିଲା—"କ'ଣ କରିବ ବେହେରା ଭାଇ, ମୁଣ୍ଡରେ ବଜ୍ର ଛିଡ଼ିପଡ଼ୁଛି । ଶଳାବାବୁ ଆସି ଘରେ—ଏଣେ ହାଣ୍ଡି ଶିକା ଉପରେ ! ଲୋକେ ବୁଝନ୍ତି ନାହିଁ—ଏଇ ମହଙ୍ଗା କାଳରେ ମଧ୍ୟ କୁଣିଆ ମଇଁସ ଖୋଜି ବୁଲନ୍ତି । ଏଇ କେଇଟା ଦିନ କିପରି ଯେ ଗୁଜୁରାଣ ମେଣ୍ଟାଇବ—ଜଗନ୍ନାଥ ଜାଣନ୍ତି !"

ଶେଷର କଥାପଦକ ଲଖିଆକୁ ବଡ଼ ଖରାପ ଲାଗିଲା ।

ବଣିମାମୁଁ କହୁଛନ୍ତି—ତା'ର ବାପକୁ ରାଜାମ ନେଇ ବଡ଼ ଚିକିତ୍ସା କରାଇ ଦେବେ, ସେ ପୁଣି ଇସ୍କୁଲରେ ବାବୁ ପିଲାପରି ପାଠ

ପଡ଼ିବ; ଟାଙ୍ଗିଆ ତ ଦଶିବ ! ଆଉ ସେବର୍ଷା ଭାକରରେ ମୁଣ୍ଡଖାଲ ଛୁଣ୍ଡରେ ମାରି ବଲ ମଣ୍ଟିରେ କାଦୁଅଚକଟି ବୁଥାଟାରେ ବାପ ତା'ର ହଇରାଣ ହେଉଛନ୍ତି । ତେବେ ସୁଦ୍ଧା ପେଟପୂରି ମୁଠାଏ ଖାଇବାକୁ, ଅଣ୍ଟା ଲୁଗାଇ ଖଣ୍ଡେ ପିନ୍ଧିବାକୁ ମିଳୁନାହିଁ । ମା' ତା'ର ମାମୁଁପାଖରେ କାନ୍ଦକୁନ୍ଦାଇ କେତେ ନେହୁରା ହୋଇ କହୁଛନ୍ତି—ମଦନାକୁ ଗୋଟେ କାମ ଯୁଟାଇ ଦେବାକୁ । ମାମୁଁ ତାର ହଁ ଭରିଛନ୍ତି । ଆଉ ଏପରି ସୁଯୋଗ୍ୟ ମାମୁଁ ଉପରେ ତାର ବାପର ଏପରି ଭରସା । ମାମୁଁ ତାର କେଡ଼େ ବଡ଼ଲୋକ, — ହାତରେ ଟିକି ଟିକି କଲ (ଘଡ଼ି) ବନ୍ଧାହୋଇ ଚକଚକ କରୁଛି — ମୁହଁରେ ସାହାବପିକା (ସିଗାରେଟ) ଜଳୁଛି । ସେ ପିକାଧୂଆଁର ବାସନାରେ ଲଖିଆର ମନଟା ଛନ ଛନ ହୋଇ ଉଠେ, ପାଟିରୁ ଲାଳ ଗଡ଼ିପଡ଼େ । ମାମୁଁ ତାର ଏଡ଼େ ସୁନ୍ଦର ପିକାକୁ ମଧ୍ୟ ଦରଖିଆ କରି ଫିଙ୍ଗିଦିଅନ୍ତି । ସଞ୍ଜ ଆଗରୁ ସେ ଦି'ଟା ସେହି ଖଣ୍ଡିଆ ପିକା ବାଡ଼ିପଛରୁ ଗୋଟାଇଆଣି ରଖିଛି — ଲୁଚିକରି ତା' ଧୂଆଁ ଟିକିଏ ଟାଣି ଦେଖିବାପାଇଁ ।

ବୀର ମଦନାର ଅସହାୟ ଅବସ୍ଥା ଅନୁଭବ କରି ଦୀର୍ଘନିଃଶ୍ୱାସ ଟାଏ ପକାଇଲା । ଆଉ ସାଥିରେ ତା' ଘରକୁ ଯିବାକୁ ଡାକି କହିଲା — 'ଆ ଯ, ଘରେ କରିଥାଇଁ — ନହେଲେ ହାବୁଡ଼େ ଏମିତି କ'ଣ ଅଚଳ ରହିଯିବ ।' ମଦନା ଲଖିଆକୁ ଘରକୁ ପିତାକୁ କହି ବୀର ସାଥିରେ ତା' ଘରକୁ ଚାଲିଗଲା । ବୀର ପିଣ୍ଡା ଉପରେ କୋଦାଳି ଆଉ ମୁଣ୍ଡର ଝାମ୍ପଟା ରଖିଦେଇ ଘରଭିତରକୁ ପଶିଗଲା ଆଉ ଭିତରୁ ହାଣ୍ଡିଟାଏ ବାହାର କରି ତହିଁରୁ ଗୁଡ଼ାଳ ଦଉଡ଼ି ଆଉ ମାଠିଆ ଗୋହାକରୁ ମୁଠାଏ ଦି'ଟା ଅଣି ମଦନାର ଗାମୁଛା କାନିରେ ବାନ୍ଧିଦେଲା, ଆଉ

ଗୁଡ଼େଇଛି ଅଣା ପଇସା ତ.’ ଅଣ୍ଟାରେ ଗୁଞ୍ଜିଦେଇ କହିଲା—“କାଲି ପୁଣି ଦେଖାଯିବ—ବଲ ଗଦ୍ଦର ମଝିରୁ ମାଗୁର ଗାଡ଼ଶ କାଇ ଦ’ଟା ଧରି ଆଣିବା,—ଏମିତ କ’ଣ ସବେ ଅଚଳ ହେଇଯିବ !”

ମଦନା ସାଇବେଳେଖେରି ଘରୁ ବାହାରି ଗାଁ’ମୁଣ୍ଡ ପାଢ଼ୀଙ୍କ ଦୋକାନରୁ ଅଳୁ ସେରେ, ଲୁଣ ମସଲା କରି ଦ’ପଇସାର ଧରି ବାଡ଼ ପଛପଟେ ଯାଇଁ ଧୀର କରି ଲଖିଆକୁ ଡାକଲା । ଲଖିଆ କାନ ଡେରି ରହିଥିଲା—ବାପ ଡାକ ଶୁଣି ଦଉଡ଼ିଆସି ଗାମୁଛାଟା ନେଇ ରନ୍ଧାଘରେ ମା ପାଖରେ ଥିବକାକ ନଥାଇଦେଲା ।

ମଦନା ଭୁଲପଡ଼ ଆଗପଟ ଦୁଆର ବନ୍ଦରେ କୋଦାଲିଟା କାନ୍ଧରୁ ଓହ୍ଲାଇ ଡାଲେ ପାଣିନେଇ ଗୋଡ଼ ଦ’ଟା ଧୋଇ ପକାଇଲା ଛିନ୍ନା ଲୁଗାଖଣ୍ଡିକ ପାଲଟି ପକାଇ ସାନ୍ତାଦ୍ଧାତ ସଫା ଲୁଗା ଖଣ୍ଡିଏ ପିନ୍ଧି ଦୁଆରେ ବସି ଚୁନପତ୍ର ଟିକଏ ଦାନ୍ତ ପାଟିରେ ପକାଇଲା । ଲଖିଅର ମାମୁଁ ସେତେବେଳକୁ ଯାଇଭୁଲି ଯାଇଥାନ୍ତି—ଲଖିଆର ଜୋଖାଯୋଖା ଦାଦା ଘରକୁ ।

ଭଣିକେଶନ ଫେରିଲାପରେ ନାନା ପ୍ରକାର ଦୁଃଖସୁଖ କଥା ପଡ଼ିଲା । ଗତ ଝଡ଼, ବନ୍ୟାରେ ଯେପରି କଷ୍ଟ ହୋଇଥିଲା,—ସେ କଥା ମଧ୍ୟ ଉଠିଲା । ଶେଷରେ ଭଣିକେଶନ କହିଲା—‘ତୁମେ ମୋ ସାଙ୍ଗରେ ରେଙ୍ଗୁନ ଚାଲ, ଭଲ ଚାକରିଟିଏ କରାଇ ଦେବି । ଚାଉଳ ଗୋଦାମ ସାଇବ ସହିତ ମୋର ଭାରି ଦୋସ୍ତି—ତମକୁ ଭାରି ସୁବଧାରେ କାମ ମିଳିଯିବ । ଏଇଠି ଭୁଖ୍ଯାରେ ପଡ଼ି ଏମିତ ଆଉ କେତେଦିନ କଷ୍ଟ ଭୋଗ କରିବ ?’

ବଣିକେଶନର କଥାକୁ ଏକାବେଳକେ କାଟିଦେବା ମଦନାର ସାହସ ନାହିଁ । କିନ୍ତୁ କଳ୍ପନାଲୋକର ଅଗୋଚରେ, ସେ କେଉଁ ସୁଦୂରରେ ସେହି ଆତଙ୍କଜନକ କୋଳାହଳ-ମୁଖର ସାତ ସମୁଦ୍ର ତେର ନଦୀ ପାରହୋଇ ରଙ୍ଗାମ ମୁଲକକୁ ଯିବା ନିମନ୍ତେ ତା'ର ତିଳେବୋଲି ଇଚ୍ଛା ନ ଥିଲା । ଆଉ ଏଇ ଯେଉଁ ମାଟି ଖଣ୍ଡିକ— ଯାହାର ମାୟା ତାକୁ ଚତୁର୍ଦ୍ଦିଗରୁ ସୁରକ୍ଷିତ କରି ରଖିଅଛି; ଯେଉଁ ମାଟିରେ ତା'ର ସାତ ପୁରୁଷର ପାଦଚିହ୍ନ ଅଙ୍କା ରହିଛି—ମଦନା ସେ ମାଟିର ମାୟା କାଟି କିପରି ସେ ରେଙ୍ଗାମ ମୁଲକକୁ ପାଦ ବଢ଼ାଇବ—କଳ୍ପନା ମଧ୍ୟ କରି ପାରିଲା ନାହିଁ । ଗ୍ରୀଷ୍ମର ଏଇ ପଲ୍ଲୀ-ପଥର ଧୂଳିରେ, ବର୍ଷାର ସ୍ନିଗ୍ଧ ଲତା-କୁଞ୍ଜରେ, ଶରତର ସବୁଜ ଧାନ କିଆରିରେ, ହେମନ୍ତର ମାଣ୍ଡିଆ ଖେତରେ, ଶୀତର ପକ୍ୱ ଶସ୍ୟପୂର୍ଣ୍ଣ ସୁଦୂର ଅଗଣାଟିରେ, ଆଉ ବସନ୍ତର ନବ-ପୁଷ୍ପ-ପଲ୍ଲବ-ମଣ୍ଡିତ ପଲ୍ଲୀ, ପ୍ରାନ୍ତର, ବନ ମଧ୍ୟରେ ପିଲାଟିଦିନରୁ କେତେ ସୁଖ ଦୁଃଖ ଭିତରଦେଇ ଏହି ପଲ୍ଲୀ ସହିତ ନିବିଡ଼ଭାବରେ ସେ ପରିଚିତ । ଏହାରି ବୁକୁରେ ଜୈଷ୍ଠର ରଜପର୍ବର ଡୁଡୁ ଖେଳ, ଆଷାଢର ରଥ ମାଘର ଅଗିର ପୁନେଇଁର ନିଆଁ ଖେଳ, ଫଗୁଣର ଫଗୁ ଖେଳ, ଆଉ ଧଉଁ ମେଳଣ, ଆଶ୍ୱିନର କୁଆଁର ପୁନେଇ ଗୀତର ସୁର, ତା'ର ହୃଦ୍ ସହିତ ମିଶି ଏକାକାର ହୋଇଯାଇଛି । ଏସବୁ ଛାଡ଼ି ସେ ପୁଣି ସାତ ସମୁଦ୍ର ତେର ନଈ ପାରିହୋଇ କେଉଁ ସରଗକୁ ଯିବ ? ମଦନା କିଛି ଭାବି ପାରିଲା ନାହିଁ—କେବଳ ଉପରକୁ ଚାହିଁ ଦୀର୍ଘ ନିଃଶ୍ୱାସଟାଏ ଛାଡ଼ିଲା ।

ମାଳତୀ କିନ୍ତୁ ଏକଜିଦ୍ ଧରିଥାଏ । ତା' ଭାଇ ଆଗରେ ମଦନା ବିରୁଷ କେଡ଼େ ହୀନ ଆଉ ଭେଡ଼ିଙ୍ଗ ଦେଖାଯାଉଛି, ଭାବିଲା

ବେଳକୁ ତା' ଦେହଟା ଶିହରି ଉଠୁଛି । ସେ ବି ତା' ସ୍ୱାମୀକୁ ହରିକେଶନ ଭଳିଆ ବାବୁରୂପରେ ଦେଖିବାକୁ ଚାହେଁ । କେତେ ବଡ଼ ବଡ଼ ବାବୁ ସାଙ୍ଗରେ କଥା ହେବ । ସାହାବ-ସିକା ଗାଇବ-ହାତରେ ସୁନା ଘଡ଼ି ବାନ୍ଧିବ ! ସେ ତା'ର ସ୍ୱାମୀକୁ ଭର୍ତ୍ସନା କରି କହିଲା,"ଏଇଠି ଖାଲି ସକାଳୁ ସଞ୍ଜ ମାଟି ସୁମ୍ଭି ଦେହହାଡ଼ ମାଟି କଲେ ତ ଆଉ ଦୁଃଖ ନିବାହ ହେବ ନାହିଁ କି ଛୁଆଟା ଆପେ ଆପେ ମଣିଷ ହୋଇ ଯିବ ନାହିଁ । ତାହାହେଲେ ସେ ସାତପୁରୁଷର ମାଟିରେ ଲାଭ କ'ଣ ଟା ? ତମେ ତ ସେମିତି ହେଲେ ଦୁଃଖ-କଷ୍ଟରେ କାଳ କାଟାଇ ନେଉଛ—ଛୁଆଟା ତ ଆଉ ତମପରି ନିହାତି ହଡ଼ା ବଳଦ ହୋଇ ହଳରେ ମାଟି ଚକଟିବ ନାହିଁ । ତାକୁ ଭଲ ଟିକିଏ ପାଠଶାଠ ପଢ଼ାଇ ମଣିଷ କର ।—ମଦନା ନୀରବରେ ସବୁ ଶୁଣିଗଲା । କିଛି ନ ହେଉ ପଛକେ ଛୁଆଟା କପରି ଟିକିଏ ମଣିଷ-ପରି ଆଉ ହେବ ଏତିକି କାମନା ମଦନାର ବୁକୁରେ ବୁକୁରେ ସଞ୍ଚିତ ଥିଲା ।

ହରିକେଶନ ବାବୁ ପରଦିନ ଫେରିବାକୁ ବସିବାରୁ ମାଳତୀ କହାକଟା ଆରମ୍ଭ କରିଦେଲା । ସେ ଜାଣେ ହରି ଗୁଲିଗଲେ ମଦନା ସିଧା ନାମରେ ବାଡ଼ି ପକାଇବ । ଏଣୁ ସେ ହରିକୁ ଲଗାଇଲା ସନ୍ତୁକୁ ସାଙ୍ଗରେ ନେଇଯିବା ପାଇଁ । ସବୁଠି ହେଲା, ଏଣେ ପଇସା କଉଡ଼ି ଅସୁବିଧା କାହିଁ ! ମାଳତୀ ଘର ଖଣ୍ଡିକ ବିକ ଦେବାପାଇଁ ପରାମର୍ଶ ଦେଲା ।—ମାତ ବାପଦାଦାପର ପୁରୁଖା ମାଟିଖଣ୍ଡିକ ବିକ୍ରି କରିବାକୁ ମଦନା ଆଦୌ ରାଜି ହେଲା ନାହିଁ । —ସେ ନ ଅଯିଲା ତେ କ'ଣ ହେଲା,—ଲକ୍ଷ୍ମିଆ କି ତା' ପୁଅ ଯିଏ ହେଲେ ଯେତେ ପୁରୁଷ ପରେ ହେଉ ପଛକେ—ତାର ବଂଶର

କଏ ହେଲେ ତ ଆସି ଏଇଟି ତା'ର ସୁଖ ଦୁଃଖର ସଂସାର ବାନ୍ଧିବ—ଏ ଚିନ୍ତାଟିକୁ ସେ ଏକାବେଳକେ ପୋଛି ଦେଇ ପାରିଲା ନାହିଁ । ଶେଷରେ ଗୃହଜମି ବିକି ଛରିବାର କଥା ହେଲା । ସେ କଥା ଭାବିଲା ବେଳକୁ ମଦନା ଆଖିରୁ ଝର ଝର କରି ଲୁହ ଝରିପଡ଼ିଲା । ବୈଶାଖର ମୁଣ୍ଡଫଟା ଖରାରେ ସେ ଯେଉଁ କଅଁଳିଆ ମାଟି ଲଙ୍ଗଳ ମୁନରେ ଚିରି ବିହନ ବୁଣିଛି,—ବର୍ଷାର ପ୍ରବଳ ଧାରାପାତ ମଧ୍ୟରେ ମୁଣ୍ଡ ପାତି ବେଉଷଣ କାମ କରିଛି, ବାଲୁଙ୍ଗ ଉପାଡ଼ିଛି, କେତେ ଶରତର ପ୍ରଭାତରେ ଯେଉଁ ଧାନଖେତରେ ନବୀନ ମଞ୍ଜରୀ ଦେଖି ଆତ୍ମହରା ହୋଇ ଗୀତ ଗାଇଛି ଆଉ ଶରତରେ ପାଚିଲାଧାନର ବୋଝ ବୋହି ଆନନ୍ଦରେ ଘରକୁ ଫେରିଛି, ପୁଣି କାଳିସୁଦ୍ଧା ଖରା ବେହେରା ଯାଗରେ ଯେଉଁ ଖେତରେ କାଦୁଅ ଚକଟି ଗାଲୁଙ୍ଗା ଉପାଡ଼ିଛି—କେତେ ଅତୀତ ପ୍ରିୟ-ସ୍ମୃତି-ବିଜଡ଼ିତ ଏକାନ୍ତ ସମ୍ବଳ ସେଇ ଖେତକୁ ଅଳ୍ପ ନିଦାରୁଣ ବନ୍ୟା ଓ ଦୁର୍ଭିକ୍ଷର ଅତ୍ୟାଚାରରେ ପର ହାତରେ ଟେକିଦେଇ କେତୋଟି ଟଙ୍କା ମାତ୍ର ସମ୍ବଳ ଧରି କୁଡ଼ିଆ ଦୁଆରେ ତାଳି ପକାଇ ଏକ ଅପରିଚିତ ଅସୀମ ପଥରେ ପାଦ ବଢ଼ାଇବା !—ଛାତି ଭିତରଟା ମଦନାର କୋହରି ହୋଇଗଲା ।

ମଦନା କିଛି ଭାବି ପାରିଲା ନାହିଁ । କେବଳ ଜଳ ଜଳ କରି ଗୁହାଁ ରହିଲା । ମାଲତୀର ଶବ, ବାକ୍ୟବାଣ ବିରୁଦ୍ଧରେ କୌଣସି ଅଭିଯୋଗ ଆଣି ପାରିଲା ନାହିଁ—ସମ୍ମୁଖରେ ଯେ ଶଶି-ବାବୁ । ଶେଷକୁ ଉତ୍ତମରି ଥିର ହୋଇ ବସିଲା ।

ଏଣେ ଶଶିବାବୁ ଯିବାକୁ ତରତର ହୋଇ ଉଠିଲେ । ସେ ତ ଅଉ ଏହି ହଳିଆ ମଳିଆଙ୍କ ଘରେ ନକମା ହୋଇ ବସି ରହିବେ

ନାହିଁ । ସେ ଶେଷରେ ମାଳତୀକୁ ଲକ୍ଷ୍ୟ କରି କହିଲେ,—"ମୁଁ ଏଇଲାଗେ ଗୁଳିଯାଉଛି, ମାଳତୀ ! ତମେ ନହେଲେ ପରେ ସୁବିଧା କରି ଯିବ ।" ଏଣେ ବଶିବାବୁଙ୍କ ଉପଯୁକ୍ତ ଖାଦ୍ୟର ଯୋଗାଡ଼ରେ ମଦନା ବେଳୁ କଂସା ଦାଖଣ୍ଡି ବନ୍ଧା ପକାଇଲାଣି । ମଦନା ଶେଷରେ କହିଲା—"ବଶିବାବୁ,ନ ହେଲେ ତମେ ଆଗେ ଯାଇ କାମଦାମ ଠିକ୍ କରି ଖଣ୍ଡେ ଶଠି ଦେବ । ତମ ଶଠି ପାଇଲେ ଯାଇ ଆମେ ଯିବୁ ।" ବଶିବାବୁ ସାନନ୍ଦରେ ଏଥିରେ ରାଜି ହେଲେ କିନ୍ତୁ ମାଳତୀ କାନ୍ଦକାଟି ଗାଳିଗୁଲଜ ଦେଇ ଶେଷରେ ଲଖିଆକୁ ଧରି ବାପଘରକୁ ବାହାରିଲା ।

କ୍ରମଶଃ ପଦ୍ମଣୀର ଜଟିଳତା ଓ ବାସ୍ତବରୂପ ଦେଖି ମଦନା ଉଦ୍ଭ୍ରାନ୍ତ ହୋଇ ଉଠିଲା । ସେ ତାର ସରଳ ବିଶ୍ୱାସରେ ଭାବିଥିଲା ଯେ ବଶିବାବୁ ଗଲାପରେ କିଛିଦିନ ବିତିଗଲେ ମାଳତୀର ମନ ବଦଳି ଯିବ, ଆଉ ପିତୃପୁରୁଷର ଜମିଗୁଡ଼ିକ ସୁରୁଖୁରୁରେ ରହି-ଯିବ । କିନ୍ତୁ ମାଳତୀର ଏ ପ୍ରାଦାନ୍ୟରେ ମଦନା ଗାମୁଛା ଖଣ୍ଡି ମୁଣ୍ଡରେ ଗୁଡ଼ାଇ ଗାଁମୁଣ୍ଡ ବରଗଛ ତଳକୁ ଗୁଳିଲା । ଯାହାଙ୍କୁ ନେଇ ତା'ର ସଂସାର, ଏଇ ଖରା ବର୍ଷା କାକରରେ ଯାହାଙ୍କ ପାଇଁ ତା'ର ଏତେ ପରିଶ୍ରମ,—ସେଇ ଝିଅ ମାଇପ ଯଦି ଗୁଳିଯିବେ ତେବେ ସେ ଏକା ଏଇ ଜମିବାଡି ଘରଦୁଆର ଧରି କ'ଣ କରିବ ?

କ୍ଷେତରେ ଖାଲି ବୁଆଳୀ ଧାନ ହୋଇଛି—ଫସଲ ଭଲ ହେବ କି ନା କିଏ ଜାଣେ ! ସୁତରାଂ ଅଳ୍ପ ଦାମ ମିଳିଲା । ମଦନା ସାଉଙ୍କ ଦୋକାନ ତଳେ ଅଧିକାରୀଙ୍କ ହାତରେ ଦୁଇ-ଗୋଡ଼ର ଟେକ ଦେଇ ଦେଢ଼ଶହ ଟଙ୍କା ଅଣ୍ଟାରେ ଗୁଞ୍ଜି ତଳମୁହାଁ ହୋଇ ଫେରିଲା । ଅତ ନିକଟରେ ବାର ଦେବତାର ଘର ! ମୁହଁ ଫେରାଇ

ଥରେ ବୋଲି ସେଆଡ଼କୁ ଗୁହିଁଲା ନାହିଁ । ସେ ଭାବୁଥିଲା ସେ ଯେପରି ଏକ ଗୁରୁତର ଅପରାଧ କରି ଫେରୁଅଛି । ସନ୍ଧ୍ୟାର ନୀଳକୃଷ୍ଣ ଆକାଶ ବକ୍ଷରେ ତାର ସ୍ୱର୍ଗବାସୀ ପିତୃପୁରୁଷଗଣ ଯେପରି କ୍ରୋଧକଷାୟିତ ନୟନରେ ତାକୁ ତିରସ୍କାର କରୁଅଛନ୍ତି ! ତାଙ୍କର ଚକ୍ଷୁର ଦୀପ୍ତିରେ ଅଗଣିତ ତାରକାରାଶି ଜଳଜଳ କରି ଜଳି ଉଠୁଛନ୍ତି ଯେପରି ! ସେଦିନ ରାତିରେ ମଦନାକୁ ଖାଇବାକୁ ଭାତ ରୁଚିଲା ନାହିଁ କି ଶୋଇବାକୁ ନିଦ ଆସିଲା ନାହିଁ ।

ପରଦିନ ସତ୍ୟବାଦୀରୁ ସଞ୍ଜ ଗାଡ଼ିରେ ସେମାନେ ଗୋପାଳପୁର ଯାକେ ଯାଇ ସେଇଠୁ ଇସ୍କୁଲମାରରେ ବସିଲେ । ଲୁଖିଆ କିଛିଦିନ ପରେ କପର ବାବୁ ହୋଇ ଫେରିବ ଏହା କହିବା ପାଇଁ ଖଣ୍ଡିଏ ସିଗାରେଟ୍ ଧଓଟି ଧରି ତା'ର ସାଙ୍ଗସାଥିମାନଙ୍କ ପାଖକୁ ଯାଇଥିଲା । ମଦନାର ତ ଉତ୍ସାହ ଆଦୌ ନ ଥିଲା ବରଂ ସେ ଜଗନ୍ନାଥଙ୍କୁ ଡାକୁଥିଲା କପରି ମାଲତୀର ମନ ବଦଳି ଯାଉ—ଆଉ ସେ ଯାଇଁ ଯାଇ ଅଧିକାରୀଙ୍କ ଟଙ୍କା କେଇଟି ଫେରାଇ ଦେଇ ଗୁପ୍ତ ଜମି ଖଣ୍ଡିକ ଫେରାଇ ଆଣି ଶରତ୍ତନ ସୁଖରେନଇ ଘୁଞ୍ଚି ସେଇ ମାଟି ଚକଟି ଜୀବନ ଗଢ଼ିବ । ଏଣେ କିନ୍ତୁ ମାଲତୀ ସବୁ ଜଞ୍ଜାଳପଣ ବନ୍ଧାବାନ୍ଧିରେ ଲାଗି ପଡ଼ିଛି । କେଉଁଠା ବା ତାର ପେଟରେ ଅଛି କେ ! କେଉଁଆ ପିତଳ କେଇଖଣ୍ଡି ତ ଧାଡ଼ୀଙ୍କ ଦୋକାନରେ ଭଙ୍ଗା ପଡ଼ିଛି—ଏ ମାଣ୍ଡେଲା ମୁକ୍ତିଲି ନାହିଁ । ଘୋଡ଼ା ଗଳାଦାଉ ବଢ଼ି ଆଉ ଝିଙ୍ଗଟେ ଝିଡ଼ିଛନ୍ତି । —ଆଉ ଯେଉଁ ଛୁଞ୍ଚା କଣ୍ଢା ପଇଆ ଦିଖଣ୍ଡି ଅଛି ସେତିକ ମଧ୍ୟ କିଣି ଆଗରେ ବାହାର କରିବାକୁ ମାଲତୀକୁ ଯେପରି ଲାଗୁଛି । ଶେଷରେ ମଧ୍ୟ ସେ ସବୁତାକୁ ବାନ୍ଧିଛନ୍ଦି ପେଡ଼ିଟାଏ ଆଉ ଗଣ୍ଠିଟାଏ ସଜ କଲା ।

ବେଲ ଅସ୍ତ ମୁଣ୍ଡରେ ହେଲଣି, ଅଜ ମଦନା ସେଇ ଯେଉଁ ବଡ଼ ଅନ୍ଧାରରୁ ଉଠି ଗୁଲିଯାଇଛି ଏଯାକେ ଦେଖା ନାହିଁ । ଏଆଡ଼େ ସେଆଡେ ଧା ଦଉଡ଼ କରି ଲଖିଆ ଫେରିଲା,—ଖିଅପିଅ ସରିଲା—ତେବେ ମଧ ତା'ର ବାପାର ଦେଖା ନାହିଁ । ବଶିକେଶନ ବ୍ୟସ୍ତ-ହୋଇ ଲଖିଅାକୁ ସାଥିରେ ନେଇ ମଦନାକୁ ଖୋଜିବାକୁ ବାହାରିଲେ ।

ଗାଁ'ଠା ଯାକ ଦଉଡ଼ି ବାରବେହେରା ଘର ହୋଇ ମାମୁଁ ଭଣଜା ଦହେଁ ବଲ ଗମ୍ଭୀର ରାସ୍ତାରେ ଦାସବନ୍ଧ ହୁଡ଼ା ଉପରେ ଆସି ଉଠିଲେ । ବଶି ଦେଖିଲେ, ବନ୍ଧତଳେ ମଦନା କାଦୁଅ ଲଟପଟ ହୋଇ ବାରବେହେରା ସହିତ ତା' ଖେତରୁ ବାଲୁଙ୍ଗା ଓପାଡ଼ୁଛି—ଅଜ ଦୁଃଖସୁଖ ହେଉଛି । ସକାଳୁ ଏତବେଳଯାଏ କିଛି ଖାଇ ନାହିଁ । କାଲି ରାତରେ ମଧ ଭଲକରି ଖାଇ ନାହିଁ । ମୁହଁଟା କେମିତ ସିଠାଳିଆ ଦେଖାଯାଉଛି । ଖରାରେ ମୁଣ୍ଡକାନ ଝାଳ ନାଳ ହୋଇ ପଡ଼ୁଛି । ମୁଣ୍ଡରେ କେବଳ ଗାମୁଛାଟି ବନ୍ଧା ଯାଇଛି । ସେହି ଶୀର୍ଣ୍ଣ ଶୁଷ୍କ କ୍ଷୁଧିତ ରୂପ ଦେଖି ଲଖିଆ ଡାକିଲା—'ବାବା' !

ବଶିବାବୁ ସେହି ମୁହୂର୍ତ୍ତରେ ରାଗି ଲାଲ ହୋଇଗଲେ—କିନ୍ତୁ ପାଖରେ ବାରବେହେରାଙ୍କୁ ଦେଖି ତୁନି ପଡ଼ିଗଲେ । ମଦନା ବଶିବାବୁଙ୍କୁ ହୁଡ଼ା ଉପରେ ଦେଖି ହସି ପକାଇଲା—"ଅଜ ଏକେବେଠେ ବଲରେ ବସି ଏପରି ସୁଅଧିନ ଭାବରେ କାମ କରିବ—କିଏ ଜାଣେ ! ସେଇଥି ପାଇଁ ଅଜ ବେହେରା ଭାଇ ସାଙ୍ଗରେ ଶେଷଥର ପାଇଁ ସାଙ୍ଗ ହୋଇ ଖେତଟା ଟିକିଏ ବାଛି ପକାଇଲି । ହଉ, ଗୁଲ—ଗୁଲ" କହି ଉଠି ଛିଡ଼ା ହେଲା ।

ମଦନାର ମତ ପରିବର୍ତ୍ତନ ହୋଇନାହିଁ ଦେଖି ବଣିବାବୁ ଖୁସି ହେଲେ । ବାରର ଉପକାରର ପ୍ରତିଦାନରେ ତା' ଜମିରେ କାମ କରିଦେବାଟା ବରଂ ତାଙ୍କୁ ଟିକିଏ ପସନ୍ଦଯୋଗ୍ୟ ହେଲା । ସେ ହସି କହିଲେ—"ଏଇ ଅପନାଟା ଭିତରେ ପଶି ମଶା ମାଛି ବଣରେ ତମକୁ କାଦୁଅ ଚକଟିବାକୁ ଭାରି ଭଲ ଲାଗେ ମଦନା ଭାଇ, ନା ?"

ମଦନା ଜିଭ କାମୁଡ଼ି କହିଲା—"ଆହା, ଏମିତ କଥା ତୁଣ୍ଡରେ ଭାଖନ୍ତୁ ନା ! ଲକ୍ଷ୍ମୀମାତାଙ୍କ ଏଇସବୁ କାମଦାମ କେବେ ଅପନା ହୁଏ ! ଏଇ କାଦୁଅ ଚକଟି ତ ଆମର ଚଉଦ ପୁରୁଷ ବଞ୍ଚି ଆସିଛନ୍ତି । ଘରେ ଯଦି ଧାନ କାଣିଏ ନାହିଁ, ମୁଠା ମୁଠା ଟଙ୍କା ଅରଜି କ'ଣ ହେବ ବାବୁ !"

ଖରାଟାରେ ବନ୍ଧ ହୁଡ଼ାରେ ଛିଡ଼ାହୋଇ ବୋକା ମଦନା ସାଥିରେ ତର୍କ କରିବାର ଇଚ୍ଛା ବଣିବାବୁଙ୍କର ମୂଳରୁ ନ ଥିଲା । ଏଣୁ ସେ ମଦନାକୁ ଶୀଘ୍ର ଆସିବାକୁ କହି ଲଖିଆକୁ ଧରି ଘରମୁହାଁ ଗୁଡ଼ିଲେ । ତାଙ୍କ ପଛେ ପଛେ ମଦନା ମଧ୍ୟ କର୍ମତ ପଦକ୍ଷେପରେ ଧୀରେ ଧୀରେ ଆଗେଇଲା—ଯେପରି ତା'ର ପିଣ୍ଡରେ ପ୍ରାଣ ନାହିଁ । ସେ ସେହିପରି କାଦୁଅ ଲେପଟ ହୋଇ ଗମ୍ଭୀର ମୁଖରେ ଖୁଆ କାତର ଶରୀର ନେଇ ଏକ ଅସୀମ ଗୁରୁବେଦନା ଧରି ଫେରିଲା—ଯେପରି କେଉଁ ଏକାନ୍ତ ଆତ୍ମୀୟର ଶବକୁ ଶ୍ମଶାନରେ ଅଗ୍ନିତ ଦେଇ ଫେରି ଆସିଛି । ମାଲତୀର ଜୋର ଜବରଦସ୍ତିରେ ହାତଗୋଡ଼ ଧୋଇ ନାକେ କାନେ ଦୁଇଟା କ'ଣ ଗୁଞ୍ଜିଦେଲା । ଗୋଟିଏ ଖାଲୁମୁଣ୍ଡା ଲୁଗାପିନ୍ଧି ଗଞ୍ଜି ଖଣ୍ଡିକ ଦେହରେ ଗଳାଇ ଘର ଗୁହାଳପାଖ ଅଡ଼େଇ ଅନାଇ ଆସିଲା—ହୁହୁ ହୋଇ ଆଖିରୁ ତାର ଲୁହ ଝରି ପଡ଼ି

ବାହାରିଲେ । ବୀରକେଶରୀ ଦେବଙ୍କ ଅଲ ସଅଲ କାମସାରି ତାଙ୍କୁ ଷ୍ଟେସନ ପାଖକୁ ନେଇ ଛାଡ଼ିବାକୁ ଭାରଥରେ ଥରେ ଆସିଛି । ମାଳତୀ ସେଉଁ ଆଜି ଗଣ୍ଡିଏ ଖଣ୍ଡିକ ତା' ଘରରେ ଦେଇ ତାଙ୍କୁ ଆଗେ ଆଗେ ଷ୍ଟେସନ ପଠାଇଦେଲା ।

କଳ୍ପନା-କୁଞ୍ଜରେ ଦୋଦୁଲ୍ୟମାନ ଲକ୍ଷିଅ ମଧ୍ୟ ତୁଳସୀ ତଳେ ଦଣ୍ଡବତ କରିବାକୁ ଯାଇ କାନ୍ଦପକାଇଲା । ଏଇ ମାଟି ଖଣ୍ଡିକରେ ଯେ ତା'ର ଶୈଶବର ଶତ ପ୍ରିୟ ସ୍ମୃତିଗୁଡିକ ବିଜଡିତ ! କେବଳ ମାଳତୀ ଏକ ଭବିଷ୍ୟତର ରଙ୍ଗିନ୍ ସ୍ୱପ୍ନରେ ମସ୍‌ଗୁଲ୍ ରହିଲା । ସାଇପଡିଶାର ସେତେକ ମାଇପୀ ତାଙ୍କୁ ବିଦାୟ ଦେବାକୁ ଆସି-ଥିଲେ । ସମସ୍ତଙ୍କ ଆଗରେ ସେ ଯେପରି ପରମ ସୌଭାଗ୍ୟବତୀ ! ତା'ର ସ୍ୱାମୀ ମଦନା ବଡ଼ଲୋକ ହୋଇଛି । ତା'ର ହାତରେ ସୁନାର ଘଡ଼ି ବନ୍ଧା, ମୁହଁରେ ସିଗାରେଟ୍ ପକାଇ ଧୂଆଁ—ପୁର ମନ୍ଦକାଇ ଦେଉଛି ।

ସଞ୍ଜ୍ୟୁଆ-ତାରା ଆକାଶରେ ଦେଖାଗଲାଣି । ଟ୍ରେନ୍ ଯିବା ବାଟରେ ମଦନା ଶେଷଥର ପାଇଁ ଦାସବନ୍ଧ ହୁଡ଼ାରେ ଉଠି କିଛି-କ୍ଷଣ ବିସ୍ତୃତ ସବୁଜ ଧାନକ୍ଷେତ ଆଡ଼କୁ ଗୃହିଁରହିଲା – ତା' ପରେ ଗର୍ଜନଶୀଳ ଥରେ ପକାଇ ଗାମୁଛା କାନରେ ଆଖି ପୋଛି ଦେଇ ତଳକୁ ଓହ୍ଲାଇ ବାଟେ ବାଟେ ଗୃଲିଲା । ସେତିକିବେଳେ ଟିକେ ତା'ର ପଛପଟୁ ବିନ୍ଧହୁଡା ଦେଇ ଗଛ ଉପରୁ 'ହୁ ହାଁ' ଡାକୁଥିଲା ଏ ଡାକି ଉଠିଲା—ହୁଁ—ହୁଁ ! ମଦନାର ଛାତିଟା ଥର ଥର କରି କାମ୍ପି ଉଠିଲା ।

ବୀରକେଶରୀଙ୍କୁ ବିଦାୟ ଦେଇ ସାକ୍ଷୀଗୋପୀନାଥଙ୍କ ଉଦ୍ଦେଶ୍ୟରେ ମୁଣ୍ଡିଆଟାଏ ମାରି ରେଲ ଉପରେ ବସିଲାଣି, ମଦନା

କାନ୍ଦପକାଇଲେ । ଟିକିଏ ପରେ ଲୁହ ପୋଛି ଦୀର୍ଘନିଃଶ୍ୱାସଟାଏ ପକାଇ ଗୁଣୁ ଗୁଣୁ ହୋଇ କହିଲେ—"ହେ ଗୋପୀନାଥେ, ମୋ' ଉପରେ ଏ ତମର ବରଦାନ ନା ଅଭିଶାପ ?"

---

# ଅଭିଶପ୍ତ

ଧରମ୍—ଲଦ୍ଦାଖର କୁଲି ସେ !

ପେଟର ଦାଉରେ ପଡ଼ି ସେ ଘର ଦୁଆର ଛାଡ଼ି ଦୂର ପାହାଡ଼ରେ ଆସି ଆଶ୍ରୟ ନେଇଛି । ଗୁଆ ଲଦ୍ଦାଖଣିର ସେ ଗୋଟିଏ କୁଲି । ବର୍ଷେହେଲା ଦେଶରୁ ଛୁଆ ମାଇପ ଆଣି ସେଇ ପାହାଡ଼ତଳେ ଘର କରି ରହୁଛି । ଷ୍ଟେସନ ପାଖକୁ ଲାଗି ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର ମଧ୍ୟରେ 'ଖାଦାନ ଠିକାଦାର'ଙ୍କ ବଙ୍ଗଳା—ବେଶ୍ ଧୋବଧାଉଳିଆ ହୋଇଛି । କୋଠା ସାମନାରେ ଗୋଟିଏ ସୁନ୍ଦର ଫୁଲ ବଗିଚା—କେତେ କିସମର ଫୁଲ ଫୁଟି ଉଜ୍ଜ୍ୱଳ ହଉଛି । ତା'ର ଭିତରେ ଗୋଟିଏ ଲମ୍ବାର ଦୋଳି ବସିଛି— ବେଳେ ବେଳେ ବଙ୍ଗଳାର ଖୋକା ଖୋକିମାନେ ସେଇଠି ଦୋଳି ଖେଳନ୍ତି । ଆଜ ସେହି ବାବୁ ବଙ୍ଗଳାର ଅଦୂରରେ ଧାଡିଏ 'ହାଟିଂ'(ପଙ୍କ୍ତି) ଘର—ବାବୁଙ୍କ ଗୋରୁ ଗୁହାଳ ଠାରୁ ମଧ୍ୟ ହୀନ ! ସେଇ 'ହାଟିଂ' ଘର ଭିତରୁ ଗୋଟିକରେ ଧରମ୍ ରହେ—ପିଲା କବିଲା ଧରି ।

ସକାଳେ ଯେତେବେଳେ ଇଞ୍ଜିନ୍ ଘରର ବଂଶୀଟା ନହାତ ନଦାରୁଣ ସ୍ୱରରେ ବାଜିଉଠେ—ଧରମ୍ ତର ତର ହୋଇ ପଖାଳ ଗଣ୍ଡାକ ନାକେ କାନେ ଗୁଞ୍ଜିଦେଇ ଗୁଲିଯାଏ—ତା' ବି କେଉଁଦିନ କଞ୍ଚାଲଙ୍କାମରିଚଟାଏ ଦେଇ କେବେ ବା ସେମିତି

ଛିଣ୍ଡା ବାଘି ପଖାଳ ! ଯେତେବେଳେ ଶତଛିନ୍ନ ମଇଳା ଲୁଗାଖଣ୍ଡିକ ଅଣ୍ଟାରେ ଗୁଡ଼ାଇ ରଙ୍ଗ ବେରଙ୍ଗର ତାଳିପକା ଗଞ୍ଜିଖଣ୍ଡିକ ଦେହରେ ଗଳାଇ ପାହାଡ଼ ଉପରକୁ ଉଠିଯାଏ—ସେତେବେଳେ ସେହି ଠିକାଦାର ବାବୁଙ୍କ ଗୃହର ଝିଅମାନେ ତାକୁ ଦେଖି ବିଦ୍ରୂପ କରି ହସିଉଠନ୍ତି—"ବେହୁଦା ହେବି ।" ଧରମୁର ହାଡ଼ କଡ଼କଡ଼େଇ ଉଠେ, ମୁହଁଟା ତା'ର ଲାଲ୍ ପଡ଼ିଯାଏ । ପୁଣି ପର ମୁହୂର୍ତ୍ତରେ ସେ ନିଜକୁ ସମ୍ଭାଳି ନେଇ ଗୃହର ଝିଅମାନଙ୍କୁ ଚାହିଁ ଟିକିଏ ମୁରୁକି ହସିଦିଏ । କଣ କରିବ—କପାଳଟା ତ ତାର ହୀନ ! ନ ହେଲେ ଗୋଟାଏ ଛତରା ଗୃହରଝିଅମାନେ ଏପରି ଥଟ୍ଟା କରନ୍ତା ନା ! ହେଇ ପରା ସେଦିନପର କଥା !—ଖୋରଧା ଲଢ଼ାଇରେ ତା' ଗୋସାଇ ଧରଣୀଧର ବାହୁଭୂଜଙ୍କ ମହାପାତ୍ର ସାନ୍ତଶ୍ରେଷ୍ଠ ଗୁଳି ଖାଇସୁଦ୍ଧା ଏକା ଏକା ଦେଢ଼ଶହ ପଲଟଣଙ୍କ ମୁଣ୍ଡ କାଟି ପକାଇଥିଲେ । ଆଉ ଆଜି ତାର ନାତି ଗୋଟାଏ ବାରବୁଲା ଅଭିଜାତ୍ୟହୀନ ଲୋକଙ୍କ ନିକଟରେ ଲାଞ୍ଛିତ ! ସେ ଦୀର୍ଘନିଃଶ୍ୱାସଟାଏ ପକାଇ ପାଦର ଗତି ଟିକିଏ ଚଞ୍ଚଳ କରିଦିଏ ।

ଧରମୁ କାମକୁ ଗୁଳିଗଲା ପରେ ତା ସ୍ତ୍ରୀ ରତମୀ କୌଣସି ପ୍ରକାରେ ଛିଣ୍ଡା ଶାଢ଼ୀଖଣ୍ଡିକ ଅଣ୍ଟାରେ ଗୁଡାଇ, ବାସୀ ଅଡ଼ତରେ ଲାଗିଯାଏ । ବରଷକର ଛୁଆଟା ତା'ର ଛିଣ୍ଡା କାନ୍ଥାଟା ଉପରେ ପଡ଼ି ପଡ଼ି ହାତ ମୁଠାଟାକୁ ପାଟି ଭିତରେ ପୁରାଇ 'ଚୁଁ ଚୁଁ' କରି ଶୋଷି ପକାଏ—ରତମୀର ବକ୍ଷର ଶୁଷ୍କ ସ୍ତନ ତାକୁ ତୃପ୍ତ କରିପାରେ ନାହିଁ !

ଧରମ ଯାଉଥିବାର ପରେ ବସି ବସି କେତେବେଳେ ତା ଛୁଆର ଛିଣ୍ଡା କାନ୍ଥାଟା ଟିକିଏ ମରାମତି କରି ପକାଏ-କେତେବେଳେ

ବା କେବଳ ଷ୍ଟୁପିଡ଼୍‌କୁ ଦୋକାନ ଘରେ ବସିରହେ ଟେରେସ୍ତର ବାଟ ଚାହିଁ—କୁଆଡ଼େ ଗଲେ । ଥରେମୁ ଧନଠାସାସ୍ ଙ୍ଗ୍ରବଣୀର ମାଡ଼ ସହି ପଥର ତାଡ଼ ତାଡ଼ ଗୃହସ୍ଥଙ୍କ ଅଣା ପଇସା କ'ଣ ଅଣିଲେ ପାଇ ଦିନ। ରେଷ୍ଟନ ପାଖ ହୋଟେଲ ଦୋକାନରୁ ଡାଲି ଗୁଡ଼ଲ କ'ଣ ଦ'ଟା ଆଣି ସେ ଚୁଲ୍ଲୀରେ ହାଣ୍ଡି ବସାଇ ଫୁଟାଇବ-ଆଜ ଗେରେସ୍ତ ଓ ଛୁଆଙ୍କୁ ତା'ର ଖାଇବାକୁ ଦେବ ! ହଠାତ୍ ସାମନା ନିଖାଦାର ବଙ୍ଗଳାରୁ ଭାସିଆସେ ଉଲ୍ଲାସର ହାସ୍ୟଧ୍ୱନୀ—ଶନ୍ତା ତା'ର କ୍ଷଣକ ପାଇଁ ଭାଙ୍ଗିଯାଏ । ସେ ତନ୍ମୟହୋଇ ଚାହିଁରହେ ସେହି ବଙ୍ଗଳା ଆଡ଼କୁ । ଏକ ସୁକୁମାର ଶିଶୁକୁ କୋଳରେ ଧରି କୋଠା ଭିତରୁ ବାହାରି ଆସେ ଏକ ଛତିଶ-ଗଡ଼ଆଣୀ ଆୟା—ଆଉ ଶିଶୁଟିକୁ ଧରି ଦୋଳରେ ବସି ଝୁଲି ଝୁଲି ଗାଇଉଠେ—'ଝୁଲନ୍ ଝୁଲେ ମେରେ କାହ୍ନାଇଁୟା ।' ରତନା ଅପଲକ ଦୃଷ୍ଟିରେ ସେ ଦୃଶ୍ୟ ଦେଖେ ମୂକ ହୋଇ—ଅଜ କାନଡେରି ଶୁଣେ ବଙ୍ଗଳା ଭିତରର ହାସ୍ୟଧ୍ୱନୀ ! ପୁଣି ଚେଷ୍ଟାକରେ ନିଜର ଛାତିଟାକୁ ତା'ର ଶୁଷିଧରେ ମୃତପିଣ୍ଡର ସ୍ପନ୍ଦନଟାକୁ ତା'ର ନିସ୍ପନ୍ଦିତ କରିବା ପାଇଁ । ହଠାତ୍ ଛୁଆଟା ତା'ର କାନ୍ଦିଉଠେ ! ସେହି ହାସ୍ୟ ଓ କ୍ରନ୍ଦନର ଦୃଷ୍ଟିପାତରେ ପଡ଼ି ସେ ଭାବେ—'ଏ ପୁଣି କେଉଁ ବିଧାତାର ଖେଳ !'

ଯେତେବେଳେ ମାଟି ଘରର ମାଟି ଚଟାଣ ଉପରେ ପଡ଼ି ଛୁଆଟି ତା'ର ଭୋକରେ ଅଉଟୁ ପାଉଟୁ ହୋଇ ଚିତ୍କାର କରି କାନ୍ଦିଉଠେ—ସେତେବେଳେ ବାବୁବଙ୍ଗଳାର ବାରଣ୍ଡାରେ ଆୟା 'ଖୋକନ୍'କୁ କୋଳରେ ଧରି 'ଖୋକା ନ ଖାୟ୍ ତ ତୋତା ମୈନା ଖାୟ୍—ଆୟ୍ ଆୟ୍' କହି ଦୁଧ ଟିକିଏ ପିଆଇବା ପାଇଁ ବ୍ୟତି-

ବ୍ୟସ୍ତ ହୋଇଉଠେ । ବାବୁଆଣୀ ଝିଅଟିକୁ ତାଙ୍କର କେତେ କେଶଭୂଷା କରି ଯେତେବେଳେ ବାବୁଙ୍କ କୋଳରେ ଦେଇ ସାର୍ଥକତାର ହସରେ ଘରଖଣ୍ଡିକୁ ଭରିଦିଅନ୍ତି—ସେତେବେଳେ ରତନାର ଶିଶୁର ମୁହଁଖଣ୍ଡିକ କ୍ଷୁଧାର ଯନ୍ତ୍ରଣାରେ ଶୁଷ୍କ ହୋଇ-ଯାଏ ! ରତନାର ମାତୃ-ହୃଦୟ ତାହା ଦେଖି ଦେଖି ଆତ୍ମସତ୍ତା ହରାଇଦେଇ ଭାବେ—ଏ ପୁଣି କି ବିଚାର ! ପଞ୍ଜରା-ଥରା ଏକ ଦୀର୍ଘ ନିଶ୍ୱାସ ପକାଇ କହେ—"ହେ ପ୍ରଭୁ !"

ଧରମୁ ବେଲବୁଡ଼ ସଡ଼କ ଅଡ୍ଡାରେ ପାଞ୍ଚୋଟି ଅଣା ପଇସା ଧରି ଘରକୁ ଫେରି ରତନା ମୁହଁରେ ଦଣ୍ଡିକ ପାଇଁ ଟିକିଏ ହସ ଦେଖିବାକୁ ପାଏ—ସେଇଥିରେ ତା'ର ଶ୍ରାନ୍ତ କ୍ଲାନ୍ତ ଶରୀରର ସମସ୍ତ ଅବସାଦ ଦୂର ହୋଇଯାଏ । କିନ୍ତୁ, ଛାତି ଭିତରେ ତା'ର ଯେଉଁ ଅଲିଭା ଶିଖାଟି ଅହରହ ଜଳୁଥାଏ—ସେଇଟା ଆଉ ଲିଭି ନାହିଁ ।

ରତନା ପିଠିରୁ ତା'ର ଝାଳ-ଧୂଳି ପୋଛି ଦେଉଁ ଦେଉଁ କହେ—"ଶୁଣୁଛ ! ଆମ ଝିଅଟା ପାଇଁ ଗୋଟାଏ କୁରୁତା ସିଆଁ କରିଅ ନା !" ରତନାର ଶୁଖିଲା ମୁହଁଟିକୁ ଚାହିଁ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ ଧରମୁ କହେ—"ରତନି ! କହିପାରିବୁ, ଆମ ଭଳି ଲୋକଙ୍କ ପକ୍ଷରେ ଝିଅର ବାପ-ମା ହେବା ଦେବତାର ଅଭି-ଶାପ ନା ବରଦାନ ?" ରତନା ଛଳ ଛଳ ଆଖିରେ ତା'ର ସ୍ୱାମୀର ମୁହଁ ଆଡ଼କୁ ଚାହିଁ ରହେ, କହେ—"ଆମ ବାବୁଆଣୀ-ଙ୍କର ଅନେକ ଟଙ୍କା, ସୁନା ଅଛି, ନାହିଁ ? ସେଥିପାଇଁ ତାଙ୍କ ଝିଅଁକୁ କେତେ ଗେଲବସରର କରନ୍ତି—" ତା'ପରେ ଗୋଟିଏ ଦୀର୍ଘନିଶ୍ୱାସ ଛାଡ଼ି ଛାତି ଭିତରଟା ଟିକିଏ ହାଲକା କରିଦେଇ ତା'ର

କଥାରେ ପୂର୍ଣ୍ଣଚ୍ଛେଦ ପକାଏ ।

ଧରମୁ ହାତପାପୁଲି ଦ'ଟାରେ ତାର ଶୁଖିଲା ଆଖି ଦୁଇଟିକୁ ଦଳିଦିଏ । ଦଣ୍ଡକ ପାଇଁ ଆଖିପତା ଗୁଡ଼ିକ ତା'ର ଓଦା ହୋଇ ଉଠେ । ସେ ଭାବେ—'ହାୟରେ ରତନୀ ! —ମାତୃତ୍ୱର ଦାବୀ ନେଇ ତୁ ଯେମିତି ଏ ଧରଣୀରେ ଜନ୍ମ ନେଇଛୁ—ବାବୁଆଣୀ ମଧ୍ୟ ସେହିପରି ଜନ୍ମ ନେଇଛନ୍ତି । କିନ୍ତୁ, ତୋର ଓ ତାଙ୍କ ଭିତରେ ରହିଛି ଏକ ବିରାଟ ବ୍ୟବଧାନ—ଆକାଶ ପାତାଳ ପରି ! ତୁ ଆସିଛୁ ତୋର ରକ୍ତ ନିଗାଡ଼ିଦେଇ ବାବୁଆଣୀଙ୍କର ଗତିପଥକୁ ରଙ୍ଗିନ କରିଦେବା ପାଇଁ—ଆଜି ସେ ତୋର ରକ୍ତରେ ଅଳତା ପିନ୍ଧି ରଙ୍ଗମଞ୍ଚରେ ଓହ୍ଲାଇଛନ୍ତି ତୋର ରକ୍ତରେ ପୁଷ୍ଟ ଜଂଶୀ ପରି ଚୁପ ନେଇ ତୋର ମାତୃବକ୍ଷର ମର୍ମନ୍ତୁଦ ହାହାକାର ବାବୁଆଣୀଙ୍କର ହାହାକାରକୁ ଘୋଡାଇ ରଖିଛି—ତେଣୁ ଆଜି ତାଙ୍କର ଗୀତ ଗଳାରେ ଉଲ୍ଲସିତ ; ଅଧର ହାସ୍ୟରଞ୍ଜିତ ହୋଇଉଠୁଛି ।'

ଏତିକିବେଳେ ଛୁଆଟା ତା'ର କାନ୍ଦି ଉଠେ । ରତନୀ ଚୁଲୀରେ କାଠ ଦ'ଟା ପକାଇଦେଇ ହାଣ୍ଡିଟା ବସାଉ ବସାଉ କହେ—"ଏଠୁ, ଛୁଆଟାକୁ ଟିକିଏ ଧରି ଦିଅନା ।"

ଧରମୁ ହୋ ହୋ ହୋଇ ହସିଉଠେ—'ରତନୀ, ଗରିବର ପୁଣି ସ୍ନେହ କ'ଣ ରେ ? ସେ ସବୁ କାଠ-ପାଷାଣଠୁ ଅଧିକ ହୀନ । ତାକୁ ସେହି ପରି ଗୀତଗଳେ ସବୁ ଲୁଗୁଇ ରଖିବାକୁ ପଡ଼େ ରେ !' ନିଜେ ପୁଣି ଛୁଆଟାକୁ ତୋଳି ଉଠାଇ ଆପଣାର ବେଦନାଭରା ଗୀତ ଭିତରେ ଭଡ଼ଧରି ମୁହଁରେ ତା'ର ଚୁମାଟିଏ ଦିଏ—ଆଉ ତା'ର ଅବୋଧ ଗୁହାଁଣୀକୁ ନିର୍ନିମେଷ ନୟନରେ ଚାହିଁ ଭାବେ—'ହାୟରେ ଶିଶୁ ! କେଉଁ ପାପଫଳରେ ତୁ

ଏ ଅଭିଶପ୍ତ ଘରେ ଆସି ଜନ୍ମ ନେଲା ତରେ ! ଅଜାଣତରେ ଆଖିରୁ ତା'ର ଦି'ଟୋପା ଲୁହ ଶିଶୁର କପାଳ ଉପରେ ଖସିପଡ଼େ ।

ଦି'ଦିନ ହେଲା ଧରମୁ କାମକୁ ଯାଇନି—ଜ୍ୱରଅଛିର ଭୀଷଣ ଜର ଆଜି କାସ । ହଠାତ୍ ସେଦିନ ଦ୍ରୁତରୁ ସେହି ବାବୁ-ବଙ୍ଗଳାର ଉତ୍ସବର ବାଦ୍ୟନାଦ ଉଠିଲା । ଧରମୁର 'ହାଟିଂ' ଘରକି ମୁହୂର୍ତ୍ତ ମୁହଁକୁ କମ୍ପ ଉଠିଲା ସେହି ବାଦ୍ୟନାଦରେ—ତାର ଝାଟି କାନ୍ଥର ଭଙ୍ଗାମାଟି ଝର ଝର ହୋଇ ଖସିପଡ଼ିଲା । ବଙ୍ଗଳାର ବାତାୟନର ପଛପଟେ ଦେଖାଦେଲେ ବାବୁଆଣୀ—ଅପୂର୍ବ ରୂପ ଧରି । ତାଙ୍କର ଆଜି କି ଅପୂର୍ବ ବେଶଭୂଷା—କି ଛନ୍ଦମୟ ପଦଗ୍ଚଳନା – କି ପ୍ରାଣ ଖୋଲା ହସ ! ସବୁ ମିଳି ଏକ ଉଲ୍ଲାସ ଦୃଶ୍ୟର ରୂପ ନେଇ ଛିଡ଼ାହେଲା ଧରମୁର କୁଟୀର-ଦ୍ୱାରଦେ । ଛତଗ-ଗଡ଼ୀଆଣୀ ଅୟା ମଧ ଆଜି ନୂଆ ଇଂବ୍ଲ୍ ଶାଢ଼ୀ ପିନ୍ଧିଛି । ଖୋକାର ବେକରେ ସୁନାର ହାର, ହାତରେସୁନାର ବଳା ! ରନ୍ଧାଘରୁ ଭାସି ଆସୁଛି ରାଜଭୋଗ ଖାଦ୍ୟର ସୁଗନ୍ଧ । କେତେ ଶହ ଅଣଶା ଲୋକଙ୍କର ପିଢ଼ା ଅସିବା, ଖିଆପିଆର ଧୂମ ଲାଗିଲା—ଏଣେ କେତେ ମାଗିଖିଆ ବେଷଧରେ ପଛପଟେ ରୁଣ୍ଡ ହୋଇ ତାଙ୍କର ପ୍ରସାଦ କଣିକାଟିକୁ ଅପେକ୍ଷା କରି ବସିଥାଆନ୍ତି । ପର ଖଣ୍ଡିଏ ପତ୍ରଲମାନଙ୍କ ରୁଣ୍ଡ ହୋଇ ଝୁଙ୍କି ଯାଆନ୍ତି — ଯେ ଆଗ ପାଏ, ଝଟକିନି ଗୁଡ଼ିଠାଏ କେତେ ଆନନ୍ଦରେ । ଠିକାଦାରବାବୁଙ୍କ ଉତ୍ସବ ବିଭୋର ଦୃଷ୍ଟି ତାଙ୍କ ଉପରେ ଟିକିଏ ବୋଲି ପଡ଼ିପାରେ ନାହିଁ । ଧରମୁ ତାର ଝୋଲଦ୍ୱାର ଫାଙ୍କ ଦେଇ ଏସବୁ ଦେଖେ—ଦୀର୍ଘନିଃଶ୍ୱାସଟାଏ ପକାଏ । ଆଜି ଯେ 'ଖୋକା' ର ଜନ୍ମଦିନ !

ଏହିପରି ନିର୍ଜନରେ ପର୍ଣ୍ଣକୁଟୀରରେ ଉତ୍ସବ ରଜନୀମଧ୍ୟରେ ଦେଖାଦେଲା ଏକ ଘନକୃଷ୍ଣ ବୈଶାଖର ପୁଞ୍ଜିଭୂତ ମେଘ— ଆଉ ଆସିଲା ଏକ ପ୍ରଚଣ୍ଡ ଘୂର୍ଣ୍ଣି ବାତ୍ୟାର ଉଦ୍ଦାମ ନର୍ତ୍ତନ । ରତମା ତା'ର ଛୁଆଟିକୁ କୋଳ ଭିତରେ ଧରି କାନ୍ଦି ଉଠିଲା—"ଏମା ଦେକସଙ୍ଗାଳିଛାରେ !"—ଧରମୁ ତା' ମୁହଁ ଉପରେ ହାତ ପକାଇ କହି ଉଠିଲା—"ନାହିଁ ରେ ନାହିଁ; ତୋର ପୁଣି ସଙ୍ଗାଳି କ'ଣ ରେ ! ରତମା, ତୋର ଛୁଆଟା ଆଜି ଖାଇ ନାହିଁ କରେ ?" ରତମା କାନ୍ଦି ପକାଇ କହେ—"ଟିକିଏ ଧରି ଦେଖ ନା, ଛୁଆଟାର ଦେହଟା କେମିତି ଖଇ ଫୁଟି ଯାଉଛି ।"

ଧରମୁ ବାଷ୍ପରୁଦ୍ଧ କଣ୍ଠରେ କହେ—"ଭଲ ହେଲାରେ ରତମା ଭଲ ହେଲା । ଆଜି ସେ ତାଙ୍କର ଉତ୍ସବର କୋଳାହଳ ତୋର ଆଉ ମୋର କ୍ରନ୍ଦନର ରବରେ ବୁଡ଼ିଯିବ ନାହିଁ—ବରଂ କୋଳାହଳକୁ ଦ୍ୱିଗୁଣ କରି ବଢାଇ ଦେବ । ସେମାନେ ଯେ ସେଇୟା ଚାହାନ୍ତିରେ ! ଅନେକ ଶୁଖିଲା ପ୍ରାଣଟାକୁ ନିଗାଡ଼ି ଦେଇ ତାଙ୍କର ଚିଟିକା ରକ୍ତ ଧାରରେ ମିଶାଇ ଦେଇ ସେମାନେ ଯେ ଦ୍ୱିଗୁଣ ତେଜରେ ଉଗ୍ରରେ ହେବାକୁ ଚାହାନ୍ତି—ଆମେ ହାଡ଼ଗୋଡ଼ା ହେବେ । ତାଙ୍କର ସୁଖର ହାସ୍ୟଧ୍ୱନି ସେ ଅନେକ ଦୁଃଖୀଙ୍କ ଚିତ୍କାରକୁ କେଉଁ ଅତଳସାଗରରେ ବୁଡ଼ାଇ ଦେଇ ଛୁଟିଯିବାକୁ ଚାହେଁ !"

ରତମର ପ୍ରାଣରେ ଧୀରେ ଧୀରେ ସେହି ଉତ୍ସବର ପ୍ରତିଧ୍ୱନି ଆଉ ଧରମୁର କରୁଣ ଆଳାପର ସୁର—ସବୁ ଲିଭି ଆସେ । ଦଦନ ହେଲା ତା'ର ଛୁଆଟିର ବେଗ୍ରାମ । ଟୋପାଏ ଔଷଧ ମଧ୍ୟ ପାଇଁବେ ପଡ଼ନା । କପଟଭାବରେ ଛୁଆଟିକୁ ବଞ୍ଚାଇବ ସେ ! ରତମା

ଧରମୁର ହାତ ଦୁଇଟି ଧରି କାନ୍ଦ ପକାଇ କହେ—"ଶୁଣୁଛ ! ଥରେ ଚହେଲ ଯାଅ ସେହି ଶୀଦାନ ଡାକ୍ତର ପାଖକୁ. ପିଲାଟା ପାଇଁ ଟିକେ ହେଲେ ଔଷଧ ମାଗି ଆଣ ।"

ଧରମୁ ଏକ ଅଦ୍ଭୁତ ପୈଶାଚିକ ହସ ହସିଦିଏ । ମନେ ମନେ ଭାବେ—ରଜନୀ, ଏ ବିରାଟ ବିଶ୍ୱ ମଝିରେ ତୋର ଛୁଆର ସ୍ଥାନ ତୋରି କୋଳଛଡ଼ା ଆଉ କେଉଁଠି ଯେ ନାହିଁରେ ! ଭଗବାନ ଯେ ଗରିବର ମାୟାମମତାଟାକୁ ଜଉମହୁଦ ଦେଇ ମା'ର ବୁକୁ ଭିତରେ ସାଇତି ରଖିଛନ୍ତି, ଏତେବେଳେ ଆଉ କିଏ ତୋ ଛୁଆକୁ ମୁହଁଟେକି ଦେଖିବରେ ! ତୋ ଛଡ଼ା ଯେ ଦୁନିଆର ଆଉ ସମସ୍ତେ ଦୁଆଳିଆ ହୋଇ ଯାଇଛନ୍ତି ।—ସେ ଆଉ ଭାବିପାରେ ନାହିଁ, ମୁଣ୍ଡ ଉପରେ ତା'ର ଆକାଶ ଭାଙ୍ଗି ପଡ଼େ ।

ପାଞ୍ଚଦିନ ଦିନ ଧରମୁ ସାଶ୍ରୁନୟନରେ ପିଲାଟିକୁ ନେଇ କାଳନଦୀ କୂଳରେ ଟେରଲପୋଲ ତଳେ ତୋଟିଏ ପଲାଶଗଛ ମୂଳରେ ଧରିତ୍ରୀମାତାର ବକ୍ଷରେ ଉପହାର ଦେଇ ଆସିଲା । ପାଞ୍ଚ ଦିନର କ୍ଷୁଧାଜର୍ଜରିତ ଶରୀରଟାକୁ ସେ କୌଣସି ପ୍ରକାରେ [illegible] ଆଖୁ ଆଣୁ ଥିବାର ତା'ର ଜୀବନ-[illegible]ଳୀଳାର ପରିସମାପ୍ତି ଘଟାଇ ଦେଲା ।—ଅନ୍ଧକାର—କଳା [illegible] [illegible] ଅନ୍ଧକାର [illegible] ଆଉ ତାର ସ୍ତ୍ରୀ [illegible] ଯାଦ ଗୁଲୁଛନ୍ତି [illegible] ଗୁରୁଭାର ବହନ କରି ।—[illegible] ପଶ୍ଚାତରେ ଆପ୍ଲୁତ ଲକ୍ଷ ଲକ୍ଷ [illegible] ତାଙ୍କୁ ହାତଠାରି ଡାକୁଛନ୍ତି, "[illegible] ଅଭିଶପ୍ତ [illegible], ଆମେ ସବୁ ସେ ତୁମରି ସାଥୀ; ତୁମରି ପରି ବାପଦାଦାଙ୍କ ଅଭିଶାପର ଗୁରୁଭାର ମୁଣ୍ଡରେ ଲଦି ଗୁଲୁଛୁ ।"

ଧରମୁଠ କୁଡ଼ିଆଘରୁ ଯେତେବେଳେ 'ମୋ ଧନରେ' ବୋଲି କନ୍ଦନର ସୁର କ୍ଷୀଣରୁ କ୍ଷୀଣତର ହୋଇ ଭାସିଆସେ, ବାବୁ-ବଙ୍ଗଳାରେ ସେତେବେଳେ ଗ୍ରାମୋଫୋନର ସୁର ଲହରୀ ଉଚ୍ଛୁଳି ଉଠେ—'ପିୟା ମିଲନ୍ କୋ ଯାନା--ଆ···ଆ···'

ଠିକ୍ ଷ୍ଟେସନ ଆରପାଖ ପାହାଡ ତଳକୁ ପ୍ରକାଣ୍ଡକାୟ ଦୈତ୍ୟପରି କଳଘର କୃଷ୍ଣକାୟ ଚିମିନିଗୁଡିକ ଆକାଶକୁ ମୁଣ୍ଡ-ଟେକି ଧୂମ ଉଦ୍‌ଗାର କରିଚାଲିଛନ୍ତି । ସେହି ବିସ୍ତୃତ କୃଷ୍ଣଧୂମରାଶି କୁଣ୍ଡଳାକୃତି ହୋଇ କ୍ରମେ କ୍ରମେ ଧୂସର ଅଭ୍ର ଧାରଣକରି ପ୍ରେତାତ୍ମା ପରି ମହାଶୂନ୍ୟରେ ଭାସି ଭାସି ଚାଲିଛନ୍ତି । ଅଜ ତା'ର ଛାୟାତଳେ ବିରାଟ କଳଘର ଦଣ୍ଡାୟମାନ ହୋଇ ଲକ୍ଷ ଲକ୍ଷ ନିସ୍ୱହ ବ୍ୟକ୍ତିର ରକ୍ତଶୋଷଣ କରି ନିଜର ବର୍ଦ୍ଧନଶୀଳ କଳେବରକୁ ପୁଷ୍ଟ କରୁଛି । ଏହି ଦାନବରାଜ୍ୟର ହୁଙ୍କାରରେ ଲକ୍ଷ ଲକ୍ଷ ପ୍ରାଣୀଙ୍କର ହୃତ୍‌କମ୍ପ ଉଠେ । କଳଘରର ମାଲିକ ହାତରେ କାଉଁରି କାଠି ରହିଛି – ବୁଲାଇ ଦେଲାକ୍ଷଣି ସମ୍ମୁଖରେ ଆସି ଉପସ୍ଥିତ ଆଜ୍ଞାଧୀନ ଦେବାଦୂତ । ଜିଜ୍ଞାସୁ ନୟନରେ ମାଲିକ ଆଡ଼କୁ ଚାହିଁ ପଚାରେ-- 'କ'ଣ ଲୋଡା ସାଆନ୍ତେ ?' ମାଲିକ ତାର ବିଶାଳ ଉଦରରେ ହାତ ବୁଲାଇ ହାଉମାରି କହେ—'ଲୋଡ଼ା ? —ଲୋଡ଼ା ଟଙ୍କା, ଅଜସ୍ର ଟଙ୍କା ?' ଦେବାଦୂତ ଜାଭିଚାଟି କହେ—'ଟଙ୍କା ! ତାହେଲେ ନେ ସାଆନ୍ତେ, ଲକ୍ଷ ଲକ୍ଷ ପ୍ରାଣର ବଳିଦାନ ଲୋଡ଼ା !' ମାଲିକର ଅଙ୍ଗୁଳି ସଙ୍କେତରେ ଚାରି-ଛ'ଅଣା ପଇସା ବିନିମୟରେ ଛୁଟି-ଆସନ୍ତି ଅସଂଖ୍ୟ ସର୍ବହରାର ଦଳ—ଧରମୁ ପରି ନିଜର କଲିଜା ଫାଡି ଭେଟକାରକୁ ଢ଼ାଳିଦେବା ପାଇଁ ।

ହଜାର ହଜାର ନରନାରୀ, ଲକ୍ଷ ଲକ୍ଷ ବୁଭୁକ୍ଷୁ, କୋଟି କୋଟି ବାସହରା ଧାଇଁ ଆସନ୍ତି, ଆକୁଳ ଆହ୍ୱାନ ଜଣାନ୍ତି ମାଲିକର ପଦତଳେ,—ହେ ପ୍ରାଣଦାତା, ତମର ବାହୁଚ୍ଛାୟା ତଳେ ଅନ୍ନ ଓ ଆଶ୍ରୟର ଭିକ୍ଷା ଦିଅ!" କେତେ ଆସନ୍ତି, କେତେ ଯାଆନ୍ତି—କେତେ ବଳିର ଯୂପକାଠରେ 'ଅନ୍ନ—ଆଶ୍ରୟ'ର ବୁଭୁକ୍ଷା ଶରଦନ ପାଇଁ ମେଣ୍ଢାଇ ଦିଅନ୍ତି। ମାଲିକ ଏକ ବିଦ୍ରୂପର ଅଟ୍ଟହାସ ହସି ଭାବେ,—"ଏମାନେ ଯେ ନିତପ୍ରତି ଏଇପରି ଆସି ବଳିର ଯୂପକାଠରେ ସାନନ୍ଦରେ ଗଳା ବଢାଇ ଦିଅନ୍ତି, ସ୍ୱା' ବ କଣ ତାଙ୍କର ଭାଗ୍ୟ?'—ଲକ୍ଷ ଲକ୍ଷ ଶ୍ରମିକର ବୁକୁ ଉପରେ ସେ ବିଜୟ ଗର୍ବରେ ଚଳାଇ ନିଏ ତା'ର ରଥ—ସମସ୍ତ ଅଧିକାରର ଦାବୀ ଦେଇ ଛଡ଼ାଇନିଏ ଯାଇ ସେହି ଅର୍ଦ୍ଧନଗ୍ନ ଅଶିକ୍ଷିତ ନରନାରୀ କ୍ଷୁଧିତ ଜନତାର ମର୍ମରେ ଘାତ ଫୁଲାଇ!

ଧରମୁ ଏହି ଛଅଟି ଦିନ କାମକୁ ଆସିନ ଥିଲା। ଘାତ ଭିତରଟା ଯେ ତା'ର ଟୋଓଜଲି ଯାଉଛି—କ୍ଷୁଧାରେ ଦେହଟା ଥରି ଥରି ଉଠୁଛି। ସେଦିନ କାମରୁ ଛୁଟିହୋଇ କୁଡ଼ିଆକୁ ତାର ଫେରିବାକୁ ବସିଛି, ମେନେଜର ସାହେବ ଡାକିଲେ—"ଶୁଣେ ଧର୍ମୁ, ଏହି ଗୁଳବସ୍ତାଟା ନିଏ ଆମାର ବାସାଯୁ ଦେଇ ଆସିବ!" ଧରମୁ ମେନେଜରର ଆଦେଶ ନତମସ୍ତକରେ ସ୍ୱୀକାର କରି ଯାଇ ଗୁଳତବର ଗୁଳ ବସ୍ତାଟା ପାଖକୁ ଗଲା, କିନ୍ତୁ ତାର ଶୋକା-କାତର ଆଉ କ୍ଷୁଧା-ଜର୍ଜ୍ଜର ଶରୀରର ଦୁର୍ବଳ ହାତ ଦୁଇଟି ଦେଢ଼-ମହଣି ବୋଝ ଉଠାଇ ପିଠିରେ ଲଦି ପାରିଲା ନାହିଁ। ବ୍ୟର୍ଥ ଚେଷ୍ଟା କରି ବୋଝଟା ଉଠାଇବାକୁ ଯାଇ ନିଜେ ଗଡିପଡ଼ିଲା।

ମେନେଜର ସାହେବ ପାର୍ଚ୍ଚି କରି ଉଠିଲେ—''ବେଟା ଶାଲା କୁଲି ହୋଇଛି ସେ । ଏତିକିକୁ କାଜ୍ କରୁଛି ବେଟାର ଘାଡ ଭାଙ୍ଗେ ଯାଉଛି ସେ । କୋନ୍ ନବାବେର ଛେଲେରେ ହାଁ ? ଭାଗୋ ନନ୍ସେନ୍ସ, ଷ୍ଟୁପିଡ୍ କୋଉଥିକାର । ଏଇ ଛୋଡ଼ି ନିୟେ କୁଲିଦେର ମହଲେ ଲଡ଼ାଇ କରେ, ...ବାଃ !......ଏଇ ମିଠୁଆ, ଶୁନୋ ଇଧର ! ଏଇ ଗୁଲି ଡାଣ୍ଡାଟୋ ଲେକର ଅମାର ବାସାମେ ପୌଁଛୁ ଦେଗା, ସମ୍‌ଜା ...ହୁଁଃ, ବେଟା ଗାଧା କୋଉଥିକାର ।''

ମିଠୁଆକୁ ଗୃହଦିନ ହେଲା ଜର—ତେବେ ମଧ୍ୟ ସେଇ ଜର ଦେହରେ କାମ କରିବାକୁ ଆସିଥିଲା । ନହେଲେ ନ ଚଳେ—ପାଞ୍ଚପ୍ରାଣୀ କୁଟୁମ୍ବ । ମିଠୁଆ ମଧ୍ୟ କମ୍ପି କମ୍ପି ଆସି ବସ୍ତା ପାଖରେ ଛିଡ଼ା ହେଲା । ତା' ଭାବଗତି ଦେଖି ମେନେଜର ସାହେବ ଅଧିକ ରାଗି ଉଠିଲେ—"ନା,ନା ଏ ଦେର ଧାଡ୍‌ସେ ଆର ହବେନା—ଏ ଶାଲାଦେର୍‌କେ କାଲକେ ତାଡ଼ାତେଇ ହଇବେ ।"

ହଠାତ୍ ଠିକାଦାର ସାହାବଙ୍କୁ ତଲପ ପଡ଼ିଲା । ତାଙ୍କ ଏଲଟିକୁ ଜର ହୋଇଛି । ତେଣୁ ସେ ଆଜି ଆସି ନାହାନ୍ତି । ଖବର ଶୁଣି ମେନେଜର ସାହେବ ବ୍ୟସ୍ତ ହୋଇ ପଡ଼ିଲେ—'ଏଇ ନେଓ, ଠିକାଦାର ତାବୁ ନା ଏଲେ କାଜ୍ କେ ଚଲେନା-ଡାକ୍ତାର ଡେକେ ବାସାଯ୍ ପେଠିଛି ତ ଅଛା, ଓ ବେଲା ଯାବୋ, ଏଇ ବାଣ୍ଡାଟା ନିଏ ଆମାର ବାସାଯ୍ ପୌଁଛେ ଦାଓ ଆଗେ—" ଦେଖି ସେ ଠିକାଦାର ମେଞ୍ଜଲା ଆଡ଼କୁ ଦ୍ରୁତଗତିରେ ମଟର ଚଳାଇଲେ ।

ଧରମ୍ ଜାଲକା ପଖୁ ଚାହିଁ ଆବୋର ଭାବେ—"ହାୟରେ ହତଭାଗ୍ୟ କୁଲି! ଏହିପରି ଭାବରେ କେବଳ ଖାଟି ଲାଞ୍ଛନା ପାଇବା ପାଇଁ ତମର ଜନ୍ମ। ରୋଗଶୋକ ମଧ୍ୟ ତମପାଇଁ ନାହିଁ। କେବଳ ତମେ ଜନ୍ମ ନେଇଛ ତମର ଜୀବନର ରସଧାରା ପଳେପଳେ ଢାଳିଦେବା ପାଇଁ—ତମର ମାଲିକର ପୁଷ୍ଟି ନିମନ୍ତେ। ତମର ଶୁଷ୍କ ନୀରକ୍ତ ଦେହର ବିନ୍ଦୁ ବିନ୍ଦୁ ରସ ଢାଳି ମାଲିକର ରୋପିତ ପୁଞ୍ଜି ବୃକ୍ଷଟିକୁ ପଲ୍ଲବ-ପୁଷ୍ପ-ଫଳରେ ପରିପୂର୍ଣ୍ଣ କରିଦେବ—ଏଇ ତ ତମର ପରମ ଧର୍ମ। ତମର ଜୀବନର ରସଧାରାର ଦାମ୍ ଯେ ମାଲିକର ଦରବାରରେ ଅତି ତୁଚ୍ଛ—ଅତି ନଗଣ୍ୟ।" ହଠାତ୍ ପିଠିଆ ତାର ହାତଟି ଧରି ଟାଣିନେଇ କହେ—"ଧରମୂ ଭାଇ, ଘର ଚାଲ।" ଧରମୂର ଚିନ୍ତା ଭାଙ୍ଗିଯାଏ।

ଟମନେଜରର ଓଁପେଲେ ଗାଡିଖଣ୍ଡିକ ଧରମୁର ହାଟିଂ ସାମନାରେ ହର୍ଣ୍ଣ ଦେଇ ବୁଲି ଯାଏ—ଆଜି ଛୁଟି ହୁଏ ଯାଇ ବାବୁ ବଙ୍ଗଳାର ଫାଟକ ସାମନାରେ। ଉଭାମ ମଟରର ହର୍ଣ୍ଣ ଶବ୍ଦ ଶୁଣି ଚମକି ଉଠି ପୂର୍ଣ୍ଣିଥରେ ଦ୍ୱାର ଫାଙ୍କରେ ଚାହେଁ ସେହି ବଙ୍ଗଳା ଆଡ଼କୁ। ଆଜି ସକାଳୁ ସେ ଦେଖୁଛି, କେତେ ବାବୁ ଆସୁଛନ୍ତି ଆଉ ଯାଉଛନ୍ତି। କିଏ ବା ଖୋକାର ମା'କୁ ସାନ୍ତ୍ୱନା ଦେବାରେ ଲାଗି ପଡ଼ିଛନ୍ତି—କେହି ବା ଗୋଟିଏ ସୁନ୍ଦର ଲାଲ ମଖମଲର ପୋଷାକ ଖୋକାକୁ ଦିଆଇ ଦେଉଛନ୍ତି। ଛତଶଗଡଆଣୀ ଆୟା ଆଜି ବିଜୁଳି ପରି ଏପାଖ ସେପାଖ ହେଉଛନ୍ତି। କାହାକୁ ଏମାନେ ଡାକ୍ତର କେଉଁଠୁ ଯେ ଆଣିଲେ ତା'ର ଠିକ୍ ନାହିଁ। ଶୀଘ୍ର ପ୍ରାଣୀ ନର୍ସ୍ କି ଡାକ୍ତରଙ୍କର ଔଷଧ ନେଇ ଖୋକା ପାଖରେ ଅନବରତ

ବସି ରହିଛୁ । ରତନୀ ତା’ ପଡ଼ୋଶୀ ଯମୁନା ମାଆଙ୍କୁ ପଚାରି ବୁଝିଥିଲା ଯେ ଠିକାଦାରବାବୁଙ୍କ ପିଲାଟିକୁ ଜର ହୋଇଛି । ସେ ସେଇଥିପାଇଁ ମୂକହୋଇ ବସିରହି ଗୃହଁ ରହୁଥାଏ ସେଇ ବଙ୍ଗଳା ଆଡକୁ । କେତେବେଳ ଏକ ହଠାତ୍ କ’ଣ ହେଲା କେଜାଣି ଭୂତ ଲାଗିଲା ପରି ଦଉଡ଼ିଗଲା ତା’ର ଭଙ୍ଗା ପେଡ଼ିଟା ପାଖକୁ, ଆଉ ତା ଭିତରୁ ତା’ର ପିଲାଟିର ଜାପାନୀ ଖେଳନା ଖଣ୍ଡି ବାହାର କରି ଦଣ୍ଡେ ଦେଖିଲା, ଆଉ ସେଇଟା ଛାତି ଉପରେ ଗୁଡି ଧରି କାନ୍ଦି ଉଠିଲା—‘ମୋ ଧନ କୁଆଡ଼େ ଗଲୁରେ ମୋ ଅନ୍ଧର ଲଉଡ଼ି···’

ଧରମୁ ମିଠୁଆ କାନ୍ଧରେ ଭରଦେଇ ଠେଲାଠେଲ ଆସି ଦେଖେ—ଘରେ ତା’ର ଏଇ ଅବସ୍ଥା ! ସେ ରତନୀ ପାଖକୁ ଯାଇ ଡାକେ—“ରତନି !” ରତନୀ ଧରମୁର ଡାକ ଶୁଣି ବାଘୁଣୀ ପରି ଧାଇଁଯାଇ ତା’ର ଛାତି ଉପରେ ପଡ଼ି କାନ୍ଦ ପକାଇ କହେ—“ମୋ ଧନ ଯେ ଠକଦେଇ ଗୁଲିଗଲା । ବର୍ଷା ଆଉ ଥଣ୍ଡା ପବନ ଲାଗି ଯେଉଁ ଜର, କାଶ ହେଲା ଆଉ ସେ ଛାଡ଼ିଲା ନାହିଁ ! ତା’ ପାଇଁ ଯେ ଔଷଧ ଟୋପାଏ ମିଳିଲା ନାହିଁ !”

ଧରମୁ ପ୍ରକୃତିସ୍ଥ ହୋଇ କହେ—“ରତନି, ଏଇ ପନ୍ଦ-କୁଡ଼ିଆର ଫାଙ୍କରେ ଯେ ଆମର ପୋଷା ଚଢ଼େଇ ଉଡ଼ି ଗୁଲିଗଲା । ତାକୁ କେମିତି ରଖିଥାନ୍ତୁରେ ଏ ଭଙ୍ଗାଘରେ ବନ୍ଦକରି ।” ସେ ମିଠୁଆର ହାତ ଛାଡ଼ିଦେଇ ମୁଣ୍ଡରେ ହାତଦେଇ ବସିପଡ଼ି ଭୋ ଭୋ କରି କାନ୍ଦ ଉଠିଲା । ମିଠୁଆ ଏ ଶୋକ ବିହ୍ୱଳ ଦମ୍ପତିଙ୍କ କରୁଣ ବିଳାପ ଶୁଣି ଅଧୀର ହୋଇ ପଡ଼ିଲା । ସେ ଅଶ୍ରୁସଜଳ ନୟନରେ ଧରମୁକୁ ଉଠାଇ ଘର ଭିତରକୁ ନେଇ ଯାଇ କହିଲା, “ଧରମୁଭାଇ

ଯେସନେ ସେ କା ହୋଗା—ହାମ୍ ଲୋଗୋଁକା କପାଲ ହୈ ।" ଧରମୁ ତା' କଥାରେ କାନ ନ ଦେଇ ବାବୁବଙ୍ଗଳା ଫାଟକ ପାଖରୁ ମେନେଜରଙ୍କ କାରଟା ଆଡକୁ ଉଦାସ ଦୃଷ୍ଟିରେ ଚାହିଁ ଚାହିଁ ଭାବେ—ଅତୀତ କାରଖାନାର କଥାଗୁଡ଼ାକ । ସେମାନେ କୁଲି ଆଜି ସେ କାରଖାନାର ମେନେଜର, ଦୁହେଁଯାକ ସମାନ ଭାବରେ ଗୋଲାମୀ କରନ୍ତି, କିନ୍ତୁ ଦୁହିଁଙ୍କ ମଧ୍ୟରେ କି ବିରାଟ ବ୍ୟବଧାନ !

ପରଦିନ ଧରମୁ ଯେତେବେଳେ କାମରୁ ଫେରିଲା—ସେତେବେଳକୁ ସଂଧ୍ୟା । ଆକାଶରେ ତାରା ଗୋଟି ଗୋଟି ହୋଇ ଦେଖା ଗଲାଣି । ସେ ଛିଣ୍ଡା ଗଞ୍ଜି ଗଣ୍ଡିକ ଦେହରୁ ଖୋଲି ବାଉଁଶ ଦଣ୍ଡାରେ ରଖିଦେଇ ଗାମୁଛାଟା ଟାଣିନେଇ କାନ୍ଧରେ ପକାଇଲା ଆଉ ଦୀର୍ଘନିଃଶ୍ୱାସଟାଏ ପକାଇ କହିଲା—"କାଲିଠାରୁ ମୋର କାମକୁ ଯିବା ବନ୍ଦ ହେଲା ରତନି । ଆଜି ଠିକାଦାରବାବୁ ଜବାବ ଶୁଣାଇ ଦେଲେ ।"

ରତନୀ ଏହା ଶୁଣି ମୁଣ୍ଡରେ ବଜ୍ର ପଡ଼ିଲାପରି ତାଟକା ହୋଇ ଧରମୁକୁ ଚାହିଁ ରହିଲା—ମୁହଁରୁ ପଦେ କଥା ତା'ର ବାହାରିଲା ନାହିଁ । କିଛିକ୍ଷଣପରେ ମୁହଁରୁ ଝାଳ ପୋଛି ପଚାରିଲା, "ତମର ଦୋଷ କ'ଣ ହେଲା ଯେ ତମକୁ କାମରୁ ଛଡ଼ଦେଲେ ?"

ଧରମୁ ଅତି ବିକୃତକଣ୍ଠରେ କହିଲା,—"ଦୋଷ ଆଉ କ'ଣ ? ସମସ୍ତଙ୍କ ସାଙ୍ଗରେ ମିଳି ମିଶି ରହିବାଟା ହେଲା ମୋର ବଡ଼ ଅପରାଧ । ସେଟ'ର ଯେଉଁ ଦୁଇନମ୍ବର ହାଟିଂ ପୋଡିଗଲା—ସେଇ ଜଳନ୍ତା ଘରୁ ହରିସାହୁର ଛୁଆଟି ବାହାର କରି ଆଣିଥିଲି

ବୋଲି ଆଖପାଖ ସବୁ କୁଲିଧାଙ୍କ ସେଇଦିନୁ ମୋତେ ବଡଭାଇ ପରି ମାନନ୍ତି । ସେଥିପାଇଁ ମେନେଜରର ସନ୍ଦେହ ଯେ ମୁଁ ମେଳି କରି ତାଙ୍କ କାମ ବନ୍ଦ କରିବାକୁ ଯାଉଛି ।" ଧରମୁର କଥା ନ ସରୁଣୁ ହରି, ମିଠୁଆ, ବେମା ପ୍ରସାଦ, ଶଙ୍କର ପ୍ରଭୃତି ଦଶ ବାର ଜଣ କୁଲି ଆସି ଧରମ୍ଭ ଦୁଆରେ ପହୁଞ୍ଚିଲେ । ହରି ଆଗପଛ ହୋଇ କହିଲା—"ଧରମୁ ଭାଇ, ଆଜ ଆମେ ତମ କତିକୁ ଶେଷ ଥର ପାଇଁ ଆସିଛୁ । କ'ଣ କହୁଛ କୁହ । ଆମେ ଆଉ ଅପେକ୍ଷା କରିବୁ ନାହିଁ, କାଲିଠୁ ଧର୍ମଘଟ ଆରମ୍ଭ କରିଦେବୁ । କେବଳ ତମର ଆଦେଶ ମାନି ଆମେ କିଛି କରୁ ନ ଥିଲୁ । ଏଇ ତ ଦେଖୁଛୁ ଶଙ୍କର, ଗୋପୀଆ, ରାମଦୀନ ହେଉଁ ହେଉଁ ତମପରି ଲୋକଙ୍କୁ ମଧ୍ୟ କାମରୁ ବାହାର କରାଗଲା, ଆମେ ଆଉ କେତେ-ଦିନ ସହିବୁ ? ଅଜ ତମଠି ଶେଷ ନିଷ୍ପତ୍ତି କରିବାକୁ ଆସିଛୁ ।"

ଧରମୁ ସେମାନଙ୍କୁ ସାନ୍ତ୍ୱନା ଦେବାକୁ ଯାଇ କହିଲା—"ଦେଖ ହରି, ମୋ' କପାଳରେ ଯାହାଥିଲା ହେଲା । ତମେସବୁ ଖାଲି ମିଛଟାରେ ନିଜ ଉପରକୁ କାହିଁକି ବିପଦ ଡାକି ଆଣିବ କହିଲ ? ଉପରେ ଭଗବାନ ସବୁ ଦେଖୁଛନ୍ତି—ସେଇ ଏକା ବିଚାର କରିବେ । ଏ ସଂସାରରେ ପୁଣି ଠିକିଏ ସହିବୋଲି କାମ କରି ଯିବାଟା ହଉଛି ବୁଦ୍ଧିମାନର କାମ । ଗଣ୍ଡଗୋଳ କରି କିଛି ଲାଭ ନାହିଁ । ଯାହା କର ପଛକେ କିନ୍ତୁ ଶେଷରେ ଦେଖିବ—ଯେତେ ଝଡ଼ଝଞ୍ଜା ସବୁ ଗରିବଙ୍କ ମୁଣ୍ଡ ଉପରେ ବୋହିଯିବ । ସେଥିରେ ପଶି କିଛି ଲାଭ ନାହିଁ ଭାଇ । ତୁମେ ସବୁ ମୁଣ୍ଡ ଠିକ୍ କରି ନିଜେ କାମରେ ଯାଇ ଲାଗ । ମୋ ପାଇଁ ଭାବ ନାହିଁ—ଏ ତ ନିତି ଦିନିଆ ଦୁନିଆର ଜଣାଶୁଣା ଘଟଣା ।"

ହରି ପ୍ରଭୃତି ତୁନିତାନି ହୋଇ ଗ୍ଭଲିଗଲେ—କିନ୍ତୁ ଘଡ଼ି ଭିତରେ ତାଙ୍କର ଯେଉଁ ନିଆଁ ଟା କୁହୁଳି କୁହୁଳି ରହିଥିଲା ସେ ଇଟା ହୁହୁ ହୋଇ ଜଳି ଉଠିଲା । ଯାଉଁ ଯାଉଁ ଗ୍ଭସ୍ତାରେ ହରି ତାର ସଙ୍ଗୀଙ୍କୁ ଲକ୍ଷ୍ୟ କରି କହିଲା—"କହିଲୁ ଭାଇ, ବେଣୀପ୍ରସାଦ, ଧରମା ଭାଇ ମଣିଷ ନା ଦେବତା ?"

ଧରମୂ ନାନା ଚେଷ୍ଟା କରି ମଧ୍ୟ କେଉଁଠି ହେଲେ ଗୋଟାଏ କାମର ଯୋଗାଡ଼ କରି ନ ପାରି ହତାଶ ହୋଇ ପଡ଼ିଛି । ଅଙ୍କକୁ ସ୍ଥିରେଦନ ହେଲା ଓଳିଏ କରି ଭାତ ଉଷ୍ନା ହୋଇଛି । ସେଠ ଦୋକାନୀଟା ଭାରି ଭଲ ମଣିଷ, ହେଲେ ମଧ୍ୟ ତାକୁ ଦୋଷ ଦେଇ ହେବ ନାହିଁ । ସେ ବସ୍ତୁର ତାର ସାନ କଲିଜାରେ କେତେ ଦମ୍ଭ ରଖିବ । ଅଜା ସେ କହିଦେଇଛନ୍ତି—ଆଉ ଚଳାଇ ପାରିବ ନାହିଁ । ଧରମୂ ଯେ ଦିନେ ବୋଲି ତାର ପଇସା ବାକି ରଖିନାହିଁ, ଏଇଥିପାଇଁ ତାକୁ ଏଇ କେତେଦିନ ଯେତେହେଲେ କେହେ ଚଳାଇ ଦେଲା—ଏଣିକି ଆଉ ପାରିବ ନାହିଁ ।

ଚାକ ରହିଲେ ସାଙ୍ଗ ପଡୋଶୀ ହରି, ଶଙ୍କର, ମିଁଟୁଆ ପ୍ରଭୃତି ତାଙ୍କର ବା ସାହାଯ୍ୟ କେତେ । ପୂରା ଦୁଇଓଳି ନିଜର କୁଟୁମ୍ବକୁ ଚଳାଇଲାବେଳକୁ ତାଙ୍କ ମୁଣ୍ଡ ବୁଲିଯାଏ । ସେମାନେ ବା କେତେଦିନ ଆଉ ଏମିତି ନିଜ ମୁହଁରୁ ତା ସଙ୍ଗେ ଆପଣା କୁଟୁମ୍ବ ମୁହଁରୁ ଭାତଗୁଣ୍ଡା ଉଠାଇ ଆଣି ଧରମୂକୁ ସାହାଯ୍ୟ କରିବେ ।

ଶେଷରେ ଧରମୂ ନିହାତି ନିରୁପାୟ ହୋଇ ନିଜମନ୍ତ୍ରୀଙ୍କରେ ଯାଇ ଛିଡାହେଲା କାରଖାନା ସୋସାଇଟିର କର୍ମକର୍ତ୍ତା ନିକଟରେ ।

ସେ ତ କାମରେ ଥିଲାବେଳେ ମାସକୁ ଗୁରିଅଣା ପଇସା ଦେଇ ଥିଲା ପୋଷାଇଟି ପାଇଁ । ଆଜି ସେ ନିଷ୍କର୍ମା—ତେଣୁ ସେ ଅଙ୍କ ପୋଷାଇଟିର ଦ୍ୱାରସ୍ଥ । ନାନା ପ୍ରକାର କାକୁତି ଜଣାଇ ଧରମୁ କର୍ମକର୍ତ୍ତାଙ୍କ ନିକଟରେ ତାର ବିପଦ ଜଣାଇ ଗୁଳିଶଟି ଟଙ୍କା ଧାର ଗୁହିଁଲା । ଶେଷରେ ଅତି କୁଣ୍ଠିତହୋଇ କହିଲା—"ଦେଖନ୍ତୁ ଆଜ୍ଞା, ଆଜିକୁ ଆଠବର୍ଷ ହେଲା ଏଇଠି ପଡ଼ିଛୁ । ଭଗବାନଙ୍କ ଦୟାରେ କେବେ କାହାରି ନିକଟରେ ହାତ ପାତି ନାହିଁ । ନିଜର ହାତ ଖଟାଇ ଜୀବିକା ଅର୍ଜିଛୁ । ଆଜି ନିହାତି ହୀନ ଅବସ୍ଥାରେ ପଡ଼ି ଆପଣଙ୍କର କୃପାପ୍ରାର୍ଥୀ । ସେଥିକୁ ଆପଣଙ୍କ ଦୟା ।

ପୋଷାଇଟିର ବାବୁଟି ହେଁ ହେଁ ହୋଇ ହସିଦେଇ କହିଲେ —ସବୁ ବୁଝିଲି ଧରମୁ । କିନ୍ତୁ ମୁଁ କ କରିବ—ନାଗୁର ! ପୋଷାଇଟିର କଡ଼ ନିୟମ ଶିଙ୍ଖଳା ଅଛି । ତୁମି କାଜେ ଥାକଲେ ଟାକା ଦେଓୟା ହୋତ୍ରା । ତୁମେ ଯେ ଆର କାଜେ ନାହିଁ । ଏରକମ ଟାକା ତ ଆର ଧାର ଦେଓୟା ହୟନା । ତୁମି ତ ସବ୍ ବୁଝିଛ ଧରମୁ, ମୁଁ କ କହିବ ।

ଧରମୁ ସବୁ ବୁଝେ—କିନ୍ତୁ କ'ଣ କରିବ ! ଉପାୟ ନାହିଁ । କ୍ଷୋଭ ଓ ଅଭିମାନରେ ଧରମୁର ଛାତିଟା ଫାଟିଯିବାକୁ ବସିଲା । ଶତ ଚେଷ୍ଟାକରି ମଧ୍ୟ ସେ ଆଉ ପଦେଏ କଥା କହିପାରିଲା ନାହିଁ ନତମସ୍ତକରେ ପୋଷାଇଟିର ଅଫିସଘରୁ ବାହାରି ଆସିଲା । ଧରମୁ ଆଜି ବିଶ୍ୱ-ସଂସାରଟାରେ ପାଗଳ । ଗରିବ ହେଲେ ମଧ୍ୟ ସେ ତ ଦିନେ ମଣିଷ ଥିଲା । ଆଜି ମିଲା କାମରୁ ବାହାରି ଯାଇ ଅକର୍ମା ହୋଇ ପଡ଼ିଛି,—ହେଲେମଧ୍ୟ ସହିବାର ତ ଗୋଟାଏ ସୀମା ଅଛି । ସେ କେବେହେଲେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା ଯେ କେବେ ପୁଣି

ସେ ଅନାହାର ଅର୍ଦ୍ଧାହାରରେ ଦିନ କଟାଇବ—ପୁଣି ତାକୁ ଭିକ୍ଷୁକ ପରି ସୋସାଇଟି ଘରେ କାରୁଣ-ବିଳାପ କରି ମୁଠା ହତାଶ ହୋଇ ଫେରିବାକୁ ପଡ଼ିବ । ଦୁସ୍ଥ ଦରିଦ୍ର ଲୋକଙ୍କୁ ସାହାଯ୍ୟ କରିବାକୁ ଯେଉଁ ସମିତିର ମୂଳଦୁଆ ଗଢ଼ା—ତାର ପୁଣି ଗୋଟାଏ ନିୟମ ଶିଙ୍ଖଳ ! ଧରମୁ ଶୁଷ୍କମୁଖରେ ଘରେ ପହଞ୍ଚିଲାବେଳକୁ ରତନୀ ତାର ବାଟଚାହିଁ ବସିଥାଏ । ସେ ଧରମୁ ମୁହଁରୁ ସବୁ ଶୁଣି ଆର୍ତ୍ତନାଦ କରିଉଠେ । ଆଖି ଦୁଇଟିରୁ ତା'ର ଲୁହ ଝର ଝର ହୋଇ ଖସିପଡ଼େ ।

"ତାହାହେଲେ ଆମେ କ'ଣ କରିବା ! ବାବୁମାନେ ବୋଧ ହୁଏ ଆମକୁ ଏଇଠି ଏହିପରି ଭୋକରେ ଶୁଖି ଶୁଖି ମରିବାର ଦେଖିବାକୁ ଚାହାନ୍ତି । ସୋସାଇଟି ନୁହେଁ ତ, ଖାଲି ଜୁଆ-ଖେଳୁଙ୍କ ଅଡ୍ଡା ! ସେଇଥି ପାଇଁ ଡାକ ଢୋଲ ବଜାଇ କୁହା-ହେଉଥାଏ—'ଆଉ ତୁମର ଚିନ୍ତା ନାହିଁ—ରୋଗଶୋକରେ ପଡ଼ି ଅକର୍ମା ହୋଇ ବସି ରହିଲେ ମଧ୍ୟ ଆମେ ତୁମକୁ ସାହାଯ୍ୟ କରିବୁ । ଏହା ସବୁ ତେଲଅମୁଣ୍ଡିଆ ଧୋବଧାଉଳିଆଙ୍କ ବେଇମାନି । ହଉ, କୁଲିମାନଙ୍କର ପରା ଗୋଟାଏ ସଭା ଅଛି—ସେଇଠାକୁ ଥରେ ଯାଅ ନା ?"

"ବୁଝିଲି ରତନି, ଏବେଦିନ ହେଲା ଏତେ କଷ୍ଟରେ ପଡ଼ି ମଧ୍ୟ ମୁଁ କାହିଁକି ସେଠାକୁ ଯାଉନି ! ସେଠାକୁ ଗଲାକ୍ଷଣି ସେମାନେ କହିବେ ଆମେ ଧର୍ମଘଟ କରିବା—ସତ୍ୟାଗ୍ରହ କରିବା । କିନ୍ତୁ ତୁ ତ ଜାଣୁ ରତନି, ଏସବୁ କାମ ମୁଁ ଏହାବେଳକେ ପସନ୍ଦ କରେ ନାହିଁ ।

"କିଛି ପାରିବ ନାହିଁ ତ କରିବ କ'ଣ ? କେବଳ ଉପାସ କରି ରହିପାରିବ ?"

ଧରମୁର କଣ୍ଠ ରୁଦ୍ଧ ହୋଇଆସେ । ସେ ତା'ର ଉଦ୍‌ଗତ ଦୀର୍ଘ ନିଃଶ୍ୱାସଟାକୁ କୌଣସିପ୍ରକାରେ ଦବାଇରଖି କହେ— "ରତନ, ସବୁ ଜାଣିସୁଦ୍ଧା କାହିଁକି ମୋତେ ଏମିତି କହୁ । ମୁଁ ନିଜେ ମଧ୍ୟ ବୁଝିପାରୁ ନାହିଁ ରତନ, କାହିଁକି ସେ ବାଟରେ ପାଦ ବଢ଼ାଇବାର କ୍ଷମତା ମୋର ଆଦୌ ନାହିଁ ।"

ଏଇ କଥାପଦକରେ ରତମାର ନାରୀପ୍ରାଣର କେଉଁ ଏକ ଗୋପନ କୋମଳତନ୍ତ୍ରୀରେ ଅଘାତ ଲାଗେ । ପ୍ରସାରିତ ଭୁଜ-ବନ୍ଧନରେ ସେ ସ୍ୱାମୀକୁ ତା'ର ଛାତି ଭିତରେ ଭିଡ଼ିଧରି କରି କରି ହୋଇ କାନ୍ଦି ଉଠେ,—"ମୁଁ ସବୁ ଜାଣେ ଗୋ, ସବୁ ଜାଣେ !— ନିର୍ବାହ ସ୍ୱାମୀ ଯେ ମୋର ମାଛକୁ ମର ବୋଲି କହନ୍ତି ନାହିଁ— ସେକଥା ମୋ ଠାରୁ ଆଉ ବେଶୀ ଜାଣେ କିଏ ? କିନ୍ତୁ ଏ ଜଗତରେ ଯେ ଏଇ ନିର୍ବାହତାର ଆଦର ନାହିଁ ! ହଉ,—ମୁଁ କାଲି ନିଜେ ଯିବି ସେଇଠାକୁ !"—

—"ତୁ ଯିବୁ ରତନ ?" ଧରମୁ ଅସ୍ତ୍ୱୀଁହୋଇ ପଚାରିଲା । "ତୁ ଗଲେ ଯେ ମୋର ସବୁ ସରିଲା । ନା, ମୁ ଏଇଲାଗେ ନିଜେ ଯାଉଛି"—କହି ଧରମୁ ସେଇ ସନ୍ଧ ଅନ୍ଧାରରେ ଶ୍ରମିକସଂଘର କୁଡ଼ିଆ ଆଡ଼କୁ ଚାଲିଗଲା ।

ଶେଷରେ ଶ୍ରମିକ ସଂଘର ଚେଷ୍ଟାରେ ଧରମୁ କିଛି କିଛି ସାହାଯ୍ୟ ପାଇ ପାରିଲା—କିନ୍ତୁ ତାହା ମଧ୍ୟ ତ ପ୍ରଚୁର ନୁହେଁ !

ସେଥିରେ ଦ'ଓଳି ଦ' ଜଣଙ୍କର ପେଟ ଭରିବା କି ଏକା-
ବେଳେକେ ଅସମ୍ଭବ ।

କୋଡ଼ିଏ ଦିନ ପର କଥା । ଖାଦାନ କଳଘରସବୁ ଅଳ୍ପକୁ
ଦ'ଦିନ ହେଲା ବନ୍ଦ । କୁଲି ମଜୁରିଆ ସଭିଏଁ ଧର୍ମଘଟ କରି କାମ
ବନ୍ଦ କରି ଦେଇଛନ୍ତି । ହରି ଏଇ ଧର୍ମଘଟର ପ୍ରଧାନ ନେତା—ତାକୁ
ନେଇ ଏଇ କୋଡ଼ିଏଟି ଦିନ ମଧ୍ୟରେ ଗୋଟାଏ ବଡ଼ଟ ଦଳ ଛିଡ଼ା
ହୋଇଛି । ତାଙ୍କର ଏ ଅଭିଯାନ ମାଲିକର ବିରୁଦ୍ଧରେ ନୁହେଁ—
କେବଳ ତାଙ୍କର ନିଜର ଅଭାବ ଓ ଅଭିଯୋଗ ଜଣାଇ ତା'ର
ପ୍ରତିକାର ପାଇବା ପାଇଁ ସେମାନେ ଏ ଦଳଗଠନ କରି ଧର୍ମଘଟ
ଆରମ୍ଭ କରିଥିଲେ । କିନ୍ତୁ ମେନେଜର ସାହେବ ଏ ଦଳର
ଅଭିଯାନ ଦେଖି ବିଚଳିତ ହୋଇ ପଡ଼ିଲେ । ଭାବି କିଛି ଠିକ୍ କରି
ପାରିଲେ ନାହିଁ । ସବୁ କୁଲିଯାକ ଯଦି ଏକଯୋଟ ହୋଇ ଗୋଟାଏ
କିଛି ଦାବି କରି ବସିବେ—ତା'ହେଲେ ମାଲିକ ତ ତାହା
ମାନିବାକୁ ବାଧ୍ୟ ହେବ ! ଗୁଡ଼ାଏ ଟଙ୍କା ତାର ଫାଙ୍କେ ଫାଙ୍କେ
ଚାଲିଯିବ । ଏହି ସନାତନ ପନ୍ଥାକୁ ଏମିତି ସହଜରେ କରଛଡ଼ା
କରିଦେବା ମେନେଜରଙ୍କ ନାଡ଼ି ନକ୍ଷତ୍ରରେ ନ ଥିଲା । ତେଣୁ
ସେ ତାର କରି ବମ୍ବେରୁ ବଡ଼ସାହେବ ମାଲିକକୁ ଅଣାଇଛନ୍ତି ।

ସଂଧ୍ୟା ହୋଇ ଯାଇଥାଏ । ଶ୍ରମିକସଂଘ କୁଡ଼ିଆଟିରେ ଯାଉ
ଶହେ ଭିତରେ ଶ୍ରମିକ ରୁଣ୍ଡହୋଇ ଅଫିସରମାନଙ୍କ ଘର ପାଖରେ
ସତ୍ୟାଗ୍ରହ କରିବାର ଆଲୋଚନାରେ ଥାଆନ୍ତି, ବଡ଼ ସାହାବଙ୍କ
ଚପରାସି ଆସି ହରିକୁ ଡାକି କହିଲା, "ସାହାବ ମେନେଜର ଉପରେ
ବଡ଼ ରାଗି ଯାଇଛନ୍ତି । ସେ ତମ ସହିତ ପରାମର୍ଶ କରି ଶ୍ରମିକମାନଙ୍କ
ସହିତ ଗୋଟାଏ ଆପୋଷ ମୀମାଂସା କରିବାକୁ ଚାହାନ୍ତି, ତେଣୁ

ତୁମକୁ ଡାକୁଛନ୍ତି ।" ଏହାଶୁଣି କେତେକ ଯାତ୍ରୀଙ୍କର ଉଠନ୍ତି— "ରଖା-ହା ତମର ଯାଇବ—ଆମେ କିଛି ଶୁଣିବୁନାହିଁ, ତମେ ଯା' ବାହାର ।" କିନ୍ତୁ ହରି ସମସ୍ତଙ୍କୁ ସାନ୍ତ୍ୱନା ଦେଇ କହେ—"ଆଚ୍ଛା, ସାହେବ ଯେବେ ଡାକୁଛି, ମୁଁ ଶୁଣି ଆସେ । ତା'ର ମତଲବ କ'ଣ ! ଯଦି ଭଲରେ ଭଲରେ ଆମ କାମ ହାସଲ ହୋଇଯାଏ ତାହାହେଲେ ମିଛଟାରେ ଗୋଲ୍‌ମାଲ୍ କରିବା କିଆଁ !" ଏଥିରେ ଅନେକ ସମ୍ମତ ହୁଅନ୍ତି, କେତେକ ହୁଅନ୍ତି ନାହିଁ; କିନ୍ତୁ ନେତାର ଆଦେଶ ମାନି-ବାକୁ ଯାଇ ପ୍ରତିବାଦ ନ କରି କହନ୍ତି, "ହଉ ଯାଅ କିନ୍ତୁ ଆମେ ତମର ଅପେକ୍ଷାରେ ଏଇଠି ବସି ରହିଲୁ । ତମେ ନ ଫେରିଲେ ଆମେ ଏଠାରୁ ଉଠୁନୁ ।"

ହରି ସେପରିଶି ଯାହାଉ ଯାଇ ସାହେବଙ୍କ ନିକଟରେ ପହଞ୍ଚି ସଲାମ କରି ଛିଡ଼ା ହେଲା । ମେନେଜର ତାକୁ ଦେଖି ଘୃଣାରେ ମୁହଁ ବୁଲାଇ ନେଲେ । ସାହେବ ହରିକୁ ଦେଖି ସିଗେଜଠି କେତେ କ'ଣ କହି ଗୁଣୁଗଲେ । ତା'ପରେ ଅନେକ ବୁଝାଇ ସୁଝାଇ ଶେଷରେ ପକେଟରୁ ପିସ୍ତଲ ବାହାର କରି ଚରମ ନିଷ୍ପତ୍ତି ଜଣାଇ-ଦେଇ କହିଲେ—"ଦେଖୋ ହଡ଼ି, ଅବବି ହାମ୍ ଟୁମ୍‌କୋ ପଛତ୍‌କାରଟା ହାୟୁ । ହମ୍ ଟୁମ୍‌କୋ ମାଇନା ବଢା ଦେଗା, ଅଚ୍ଛା ନୌକରୀ ଦେଗା—ଟୁମ୍ ଷ୍ଟ୍ରାଇକ୍ ବନ୍ଦ୍ କରୋ ଡ଼ା ।"

ହରି କିନ୍ତୁ ଦବିବାର ପାତ୍ର ନୁହେ । ସେ ବଡ଼ ସାହେବଙ୍କୁ ମୁହେଁ ମୁହେଁ ଜବାବ ଦେଲା—"ଆଜ୍ଞା ସହିପାରିବୁ ନାହିଁ ସାହାବ ! ବହୁତ ସହିଛୁ ! ଆମର ରକ୍ତ ନିଗାଡ଼ି ଦେଇ ଯେଉଁ କଳଘରକୁ ଆମେ ଠିଆ କରାଇଛୁ, ତାକୁ ଭାଙ୍ଗିବାକୁ ଆମେହିଁ

ଏକମାତ୍ର ଅଧିକାରୀ । ତମେ ଯେଉଁ କଳଙ୍କଟାକୁ ବଞ୍ଚାଇବାକୁ ଯାଇ ଆମକୁ ନରକର ଅତଳ ଗହ୍ୱରକୁ ଠେଲି ଦେଇଛ—ଦିନେ ତମର ସେଇ କଳଙ୍କର ମୂଳଦୁଆଟା ବି ଆମର ଦହ୍ନିତ ନିଃଶ୍ୱାସରେ ଖସି ପଡ଼ିବ !”

ବଡ଼ସାହେବ ହରିର ଏ ଧୃଷ୍ଟତା ଦେଖି ଲାଲ ଆଖି ଦେଖାଇ ଗର୍ଜି ଉଠିଲେ,—“ଉଲ୍ଲୁକୋ ହୁଆ, ଅବବ ଛମଝ ହାୟ ! ଟୁମ୍ ଲୋଗ୍ ଛମକ୍ କର୍ ବଲ୍ନେ—କ୍ୟା କହେଗା !”

ହରି ପୂର୍ବପରି ଅବିଚଳିତ ସ୍ୱରରେ ସଦର୍ପରେ ଉତ୍ତର ଦେଲା, “ମୋତେ ଆଉ ଭୁଲାଇବାକୁ ହେବ ନାହିଁ ସାହାବ ! ମୋର ସଂକଳ୍ପଟାକୁ ବଞ୍ଚାଇ ରଖିବାକୁ ଏ ବ୍ୟର୍ଥ ପ୍ରାଣଟାକୁ ଫାଶୀ କାଠରେ ଟାଙ୍ଗିଦେବାକୁ ମଧ୍ୟ ପଛାଇବି ନାହିଁ !”

ହରିର ଏହି ଅଦମ୍ୟ ଜବାବ ସାହେବ ପକ୍ଷରେ ବଡ଼ ଅସହ୍ୟ ହୋଇ ଉଠିଲା । ମୂହୂର୍ତ୍ତକରେ ତା'ର ଅଙ୍ଗୁଳି ସଙ୍କେତରେ ଅପର ଏକ କୋଠରୀରୁ ସ୍ଥାନୀୟ ପୋଲିସ ବାହାରି ହରିକୁ ଗିରଫ କରିନେଲେ । ଆଉ ସ୍ୱଳ୍ପ ସମୟ ଭିତରେ ଏକ ସ୍ୱତନ୍ତ୍ର ମଟର ଯୋଗେ ହରି ଏକ ଅଜ୍ଞାତ ସ୍ଥାନକୁ ଚାଲାଣ ହୋଇଗଲା । ସାହେବ ତାଙ୍କର କଳ୍ପିତ ଚକ୍ରାନ୍ତରେ ଏତେ ସହଜରେ ସଫଳତା ପାଇବା ଦେଖି ଅଟ୍ଟହାସ କରି ହସିଉଠିଲେ । ଏଣେ ଏକ ଅଜ୍ଞାତ ଆଶଙ୍କା କଳ୍ପନା କରି ଶାନ୍ତିରକ୍ଷା ନିମନ୍ତେ ରିଜର୍ଭ ପୋଲିସ ପ୍ରାର୍ଥନା କରି ହାଜାରିବାଗ ତାର କରିବାକୁ ମେନେଜରଙ୍କୁ ହୁକୁମ ଦେଲେ ।

ଏଣେ ଶ୍ରମିକସଂଘ ଘରେ ହରିଙ୍କୁ ଅପେକ୍ଷା କରି କରି ଶ୍ରମିକ-ମାନଙ୍କର ଆଖିରୁ ପାଣି ମଲା । ରାତି କ୍ରମଶଃ ଗଭୀରରୁ ଗଭୀରତର ହୋଇଆସିଲା, ତଥାପି ମଧ୍ୟ ହରି ଫେରିଆସିଲା ନାହିଁ । ଶ୍ରମିକ-ଦଳଙ୍କ ମନରେ ସନ୍ଦେହ ଗାଢ ହେଲା । ରାମଦୀନ, ଶଙ୍କର, ବେନିପ୍ରସାଦ ପ୍ରଭୃତି କେତେକ ସାହାସର ସହିତ ସାହାବ ବଙ୍ଗଳା ପାଖରୁ ବୁଲିଆସି ସନ୍ଧାନ ଦେଲେ ଯେ—'ସବୁ ଶୂନଶାନ୍, ଅନ୍ଧାର, ସଭିଏଁ ନିଦରେ ଶୋଇଛନ୍ତି । ଜନମାନବର ଦେଖା ନାହିଁ, କେବଳ ବଙ୍ଗଳା ବାରନ୍ଦାରେ ଦି'ଜଣ ଗୁର୍ଖା ସିପାହୀ ବନ୍ଧୁକ କାନ୍ଧରେ ପହରା ଦେଉଛନ୍ତି ।'

ଏହି ଅପ୍ରତ୍ୟାଶିତ ସମ୍ବାଦରେ ଉପସ୍ଥିତ ଜନତା ମଧ୍ୟରେ ଚାଞ୍ଚଲ୍ୟ ଦେଖାଗଲା । ରାତି ରାତି ସବୁ ଶ୍ରମିକ ମହଲରେ ବେତାର-ବାର୍ତ୍ତା ଖେଳିଲା ପରି ସମ୍ବାଦ ଖେଳିଗଲା ଯେ, ସାହାବ ହରିଙ୍କୁ ଅପୋଷ ନିଷ୍ପତ୍ତି କରିବା ଛଳନାରେ ଡାକିନେଇ ମାରି ଦେଇଛନ୍ତି—ଲାସ୍ର ପତ୍ତା ମିଳୁନାହିଁ । ଯେ ଶୁଣିଲା ଯୋଗୁଁ ମାରିଲାପରି ଦଣ୍ଡେ ଛିଡ଼ା ହୋଇଗଲା ।

ପରଦିନ ସୂର୍ଯ୍ୟ ଉଦୟ ସଙ୍ଗେ ସଙ୍ଗେ ଅଗଣିତ ଶ୍ରମିକରଧାଡ଼ି ପିମ୍ପୁଡ଼ି ସୁଅପରି ସାହାବବଙ୍ଗଳା ଆଡ଼କୁ ଅଗ୍ରସର ହେଲେ । ସେ ଦିନ ସେ ଜନତାର ଅଗ୍ରଣୀ ନିଜେ ଧରମୁ । ସାହାବ ବାର-ନ୍ଦାରେ ଥାଇ ଏସବୁ ଦେଖି ପ୍ରମାଦ ଗଣିଲେ । ଗୁର୍ଖା ସିପାହୀ ଦିହେଁ ଫାଟକରେ କଣ୍ଟା ପକାଇ ବନ୍ଧୁକ କାନ୍ଧରେ ଧରି ବଙ୍ଗଳା ଚାରିପାଖ ଟହଲ ମାରୁଥାନ୍ତି । ଜନତା ଫାଟକ ନିକଟରେ ପହଞ୍ଚି ଚିତ୍କାର କଲେ-"ପୁଞ୍ଜିବାଦ ଧ୍ୱଂସ ପାଉ,—ଇନ୍‌କିଲାବ୍—ଜିନ୍ଦାବାଦ୍ !" ସାହାବ

ପିସ୍ତଲ ଉଠାଇ ଫାଟକ ପାଖକୁ ଚାଲିଆସି ଗର୍ଜନ କରି କହିଲେ—"ଏସ୍ ସିପାହି ! ଇନ୍ ଛୟୁଟାନ୍ ଲୋଗୋକୋ ଭଗାଡୋ ।"

ସାହେବଙ୍କର ଏହି ବ୍ୟବହାରରେ ଉପସ୍ଥିତ ଜନତା ଉତ୍ତେଜିତ ହୋଇ ଉଠିଲା । ଧରମୁ ସେମାନଙ୍କୁ ଶାନ୍ତ କରିବାକୁ ଯାଇ ହାତ ଉଠାଇ ଉଚ୍ଚସ୍ୱରରେ କହି ଉଠିଲା—"ଥୟଧର ଭାଇମାନେ, ଥୟ ଧର ! ଏପରି ଗରମ ହେଲେ କାମ ଚଳିବ ନାହିଁ । ଆମକୁ ଶାନ୍ତ-ସଂଗ୍ରାମ କରିବାକୁ ପଡ଼ିବ । ଆମର ପଶୁବଳ ସହିତ ଯାନ୍ତ୍ରିକ ସଂଗ୍ରାମ କରିବାର ଶକ୍ତି ନାହିଁ । ସେ ଆହୁରି ଉଚ୍ଛ୍ୱସିତ ହୋଇ ଦ୍ୱିଗୁଣ ତେଜରେ କହିଉଠିଲା—"ଦେଖୁଛ ଭାଇ, ଏଇ ଯେଉଁ ଶୀର୍ଣ୍ଣ ଧମନୀ ମୋର ଏଇ ଶୁଖିଲା ଚମଡଳେ ବାରିହୋଇ ଦିଶୁଛି, ଏବେ ସୁଦ୍ଧା ଏଇଥିରେ ଜଙ୍ଗଲର ବୀର ଖଣ୍ଡାୟତ ବଂଶର ରକ୍ତ-ପ୍ରବାହ ବୋହୁଛି । ଏଇ ଯେଉଁ ଦୁର୍ବଳ କୋହଳ ବାହୁ ଦି'ଟା ଦେଖୁଛ— ଏହାରି ବଳରେ ଦି'ଦି'ଟା ଅଧମହାଣିଆ ଖଣ୍ଡା ଫର ଫର ହୋଇ ଘୂରିବୁଲୁଥିଲା । ଆଜ ଆଜି, ଆଜି ତାହା ଏହି ଶୋଷକ ଶାସକ-ଗଣଙ୍କର ନିବିଡ଼ ଶୋଷଣ ଫଳରେ ରକ୍ତହୀନ, ତେଜୋହୀନ ହୋଇପଡ଼ୁଛି । ଗା'ନ ହେଲେ ଆଜି ସାହାବର ସାଧ ଥାଆନ୍ତା, ହରିଭାଇକୁ ନେଇ କେଉଁଠି ଲୁଚାଇ ରଖିବାକୁ ? ପ୍ରତିଜ୍ଞା କର ଭାଇ, ଏଇଠି ଏମିତି ବସିରହିବା ଯେତେବେଳେ—ହରିଭାଇକୁ ସାଙ୍ଗରେ ନ ନେଇ ଯିବାନାହିଁ ।" ଜନତା ମଧ୍ୟରୁ ସମସ୍ୱରରେ ପ୍ରତିଧ୍ୱନି ଉଠିଲା—"ନିଶ୍ଚୟ, ନିଶ୍ଚୟ ।— ସାହାବ ଆମ ହରିଭାଇକୁ ଭଲରେ ଭଲରେ ଫେରାଇ ଦିଅ ।" ଶାନ୍ତିପୂର୍ଣ୍ଣ ଜନତା ସମସ୍ୱରରେ ଚୋହିମାଠ ଚିତ୍କାର କରିଉଠିଲା ।

ସାହାବ ଏ ବ୍ୟାପାର ଦେଖି ସଙ୍ଗେ ସଙ୍ଗେ ସ୍ଥାନୀୟ ପୋଲିସ୍ ଫଉଜକୁ ଫୋନ୍ କରି ନିଜର ବିପଦ ସମ୍ଭାବନା ଜଣାଇ ଦେଲେ । ତା'ର କିଛିକ୍ଷଣ ପରେ ପୋଲିସ ଆସି ଧରମୂକୁ ଗିରଫ କରିବାକୁ ଅଗ୍ରସର ହେଲେ । ହଠାତ୍ ଜନତା ମଧ୍ୟରେ ଗୃହଅଳ୍ପିତା ଦେଖାଗଲା । ସଙ୍ଗେ ସଙ୍ଗେ ଅସଂଖ୍ୟ ଶ୍ରମିକ ଧରମୂକୁ ମଝିରେ ରଖି ତା' ଚାରିପାଖ ବେଢିଗଲେ, ଆଉ ଚିତ୍କାର କରି ଉଠିଲେ—"ଫେରିଯାଅ— ଫେରିଯାଅ ଦସ୍ୟୁ, ଧରମୂକୁ ଆମେ କେବେହେଲେ ଛାଡ଼ିବୁ ନାହିଁ ।"

ଠିକ ଏତିକିବେଳେ ଧୂଳି ଉଡ଼ାଇ ଶହେ ଜଣ ସଙ୍ଗୀନ୍‌ଧାରୀ ଗୁର୍ଖା ସିପାହୀ ଧରି ହଜାରିବାଗରୁ ଦଉଡି ଲରି ଆସି ପହଞ୍ଚିଗଲା । ଆଖି ପିଛୁଳା ମାତ୍ରକେ ଅବସ୍ଥା ଭିନ୍ନ ରୂପ ଧାରଣ କଲା । ଜନତାକୁ ହଟିଯିବାପାଇଁ ଆଦେଶ ଦିଆଗଲା—କିନ୍ତୁ ଜନତା ସେ ଆଦେଶ ଗ୍ରାହ୍ୟ କଲାନାହିଁ, ଛିଡ଼ାହୋଇ ରହିଲା ଅଚଳ ଅଟଳ ହୋଇ । ପୁଣି ଥରେ ସାବଧାନ ସଙ୍କେତ ଦିଆଗଲା; ମାତ୍ର ଉତ୍‌କ୍ଷିପ୍ତ ଜନତା ସେ ଭୟ ପ୍ରଦର୍ଶନକୁ ଭ୍ରୂକ୍ଷେପ ନ କରି ପୂର୍ବଠାରୁ ଦ୍ୱିଗୁଣ ଦମ୍ଭରେ ଅବିଚଳିତଭାବରେ ଛିଡ଼ାହୋଇ ରହିଲା । ସଙ୍ଗେ ସଙ୍ଗେ ଗୁଳି ଲାଠି । ଲାଠି ଓ ବନ୍ଧୁକ କୁନ୍ଦା ମାଡ଼ରେ ନିରସ୍ତ୍ର ଅଶିକ୍ଷିତ ମୂକଜନତା ଅସ୍ତବ୍ୟସ୍ତ ଓ ବିକ୍ଷିପ୍ତ ହୋଇଗଲା । ଯେତେବେଳେ ପୋଲିସ ଫଉଜ ତାଙ୍କର ପଶୁବଳର ବୀରତ୍ୱ ଦେଖାଇ ସାରି ଦମ୍ ନେଲେ ସେତେବେଳକୁ ଧରମୂ ପ୍ରମୁଖ ସାତଜଣ ଶ୍ରମିକ ବନ୍ଦୀ । ଆଜି ରାମଦୀନ, ପ୍ରତାପସିଂହ, ଶଙ୍କର ମଧୁଆ ପ୍ରଭୃତି ଅଭିଶପ୍ତ ପ୍ରାଣୀ ଚକ୍ରାନ୍ତ କାରାଗାରରେ ପାଚି ବାମୁଡ଼ ପଡ଼ିଛନ୍ତି ।

ସାହେବର ବାରଣ୍ଡାରେ ଥାଇ ହାଃ ହାଃ କରି ହସିଉଠି କହିଲେ—"କ୍ୟା ହୁଆ ଭରମୁ, ଭେଖା । ହାଃ-ହାଃ-ହାଃ"

ସେହି ଦିନ ଚାରିଟାବେଳର କଥା । ଟ୍ରେନ୍ ଟାଇମ୍ ହୋଇଯାଇଥାଏ । ଷ୍ଟେସନର ଅଦୂରରେ ଲୋକାରଣ୍ୟ । ପ୍ଲାଟଫର୍ମର ଚାରିପାଖ ସଙ୍ଗୀନ୍‌ଧାରୀ ଗୁର୍ଖା ସିପାହୀଗଣ ପହରା ଦେଉଥାଆନ୍ତି । ଗୋଟାଏ ତୃତୀୟ ଶ୍ରେଣୀ ଡବାରେ ଧରମୁ ଓ ତା'ର ସଙ୍ଗୀ ଛ ଜଣ ଭର୍ତ୍ତି ହୋଇଛନ୍ତି—ହାତରେ ତାଙ୍କର ହାତକଡ଼ି ଗୋଡ଼ରେ ବେଡ଼ି । ଡବା ଭିତରେ ମଧ୍ୟ ପୋଲିସ ପହରା । ରତ୍ନମା ଧୀରେ ଧୀରେ ଯାଇଁ ପ୍ଲାଟଫର୍ମ ପାଖ ନିମ୍ବଗଛ ତଳେ ଠିଆହେଲା ନୀରବରେ,—ତା'ର ପ୍ରାଣରେ ଯେ ଆଜି ପ୍ରବଳ ଝଡ଼ ତୋଫାନ ବୋହିଚାଲିଛି । ସ୍ୱାମୀ ତା'ର ରାଜଦ୍ରୋହୀ ବନ୍ଦୀ ବେଶରେ । ସେ ଗୌରବମୟ ଯାତ୍ରୀର ଲଲାଟରେ ଜୟଟିକା ପିନ୍ଧାଇଦେବା ପାଇଁ କେହି ଆସିଲେ ନାହିଁ କି ଫୁଲହାର ଧରି ତା ନିକଟରେ ଛିଡ଼ାହେବାପାଇଁ କେହି ରହିଲେ ନାହିଁ । କେବଳ ରତ୍ନମା ଆସିଛି ଏକ ଦୁଃଖର ଅଶ୍ରୁସାଗର ସଙ୍ଗରେ ନେଇ ! ସ୍ୱାମୀ ତା'ର ତା ଆଡ଼କୁ ଚାହିଁଲା ମାତ୍ରକେ ସେ ସାଗର ତା'ର ଉଦ୍ଦାମ ଚଞ୍ଚଳ ହୋଇଉଠିଲା । ଧରମୁ ତାକୁ ଇଙ୍ଗିତରେ କାନ୍ଦିବାକୁ ବାରଣ କଲା ତା' ଆଡ଼କୁ ଚାହିଁରହିଲା ।

ଆଜି ଧରମୁ ତାର ଜୀବନର ବୁଝାମଣା ଏଇ ଶ୍ୟାମଳ ଭୂଇଁରେ ଶେଷ କରିଦେଇ ଯାଉଛି—କେତେଦିନ ପାଇଁ ସେ ଜାଣେ ନାହିଁ । ରତ୍ନମାକୁ ତା'ର ଅନେକ କଥା କହିବାର ଥିଲା—ରତ୍ନମାର ମଧ୍ୟ କହିବାର ଅନେକ ଥିଲା । କିନ୍ତୁ କେହି କାହାକୁ କିଛି କହି ପାରିଲେ ନାହିଁ ଆଜି । ତାଙ୍କ ଭିତରେ ଆଜି ଯେ ଏକ

ଅନନ୍ତ ବ୍ୟବଧାନ । ଧରମୁ ଏତେଦିନକେ ଆଜ ରତ୍ନମାକୁ ଟିକିଏ ଲକ୍ଷ୍ୟ କରି ଦେଖିବାର ସୁଯୋଗ ପାଇଛି । ଏଥିମଧ୍ୟରେ ରତ୍ନମାର ରୂପର କି ଘୋର ପରିବର୍ତ୍ତନ ଘଟିଛି । ଆଜି ସେ ପାଞ୍ଚବର୍ଷ ଆଗର ବହ୍ନିରୂପିଣୀ ସୁନ୍ଦରୀ ରତ୍ନମା ନୁହେଁ । 'ହୃଷ୍ଟପୁଷ୍ଟ ଅଙ୍ଗପ୍ରତ୍ୟଙ୍ଗରେ ତାର ଶିଥିଳତା ଦେଖାଦେଇଛି । ଗାଲ ଓ ଆଖି ଦିଓଟି ଭିତରକୁ ପଶିଯାଇଛି । ପଞ୍ଜରା ଓ ବେକର ହାଡ଼ ଉପରକୁ ବାରିହୋଇ ଦେଖାଯାଉଛି । ରତ୍ନମାର ସେ ଶୀର୍ଣ୍ଣମୂର୍ତ୍ତି ଆଡ଼କୁ ଧରମୁ ଆଉ ଚାହିଁ ପାରିଲା ନାହିଁ । ନିଜପ୍ରତି ତା'ର ଏକ ବିରାଟ ଅସମ୍ମାନ ଆସିଗଲା—'ମୁଁ ସେ ଏକ ଅକର୍ମଣ୍ୟ ପିଶାଚ । ତା'ର ନିଃଶ୍ୱାସରେ ଅମ୍ଳାନ କୁସୁମ ରତ୍ନମା ମଧ୍ୟ ଅକାଳରେ ଝାଉଁଳି ପଡ଼ିଲା । କି ଅଧିକାର ତା'ର ଥିଲା ରତ୍ନମର ପ୍ରାଣଟାକୁ ନେଇ ଏପରିଭାବରେ ଖେଳିବାକୁ ? କେତେ ଦିନ ହେଲା ପେଟପୂରା ମୁଠାଏ ଭାତ ମଧ୍ୟ ତାକୁ ଯୋଗାଇ ପାରିନାହିଁ । ସେହି ଧୈର୍ଯ୍ୟଶୀଳା ଦେବୀପ୍ରତିମା ରତ୍ନମାର ଅଧର ଫାଙ୍କରେ ଦିନେ ହେଲେ ତ ସେ ଏକ ହସର ରେଖା ଫୁଟାଇ ପାରିନାହିଁ ! କି ଅତ୍ୟାଚାର ! ଆଉ ରତ୍ନମା, ଦସ୍ୟୁମର୍ଦ୍ଦୀ ରତ୍ନମା ତା'ର ସଂସାରକୁ ଆସି କେବଳ ନୀଳକଣ୍ଠ ପରି ବିଷପାତ୍ର ଧରି ଚୁମ୍ବନ ଦେଇଛି । ଏଥିପାଇଁ ଦାୟୀ କିଏ ? ଧରମୁ, ସେ ନିଜେ !' ଆଉ ସେ ଭାବିପାରିଲା ନାହିଁ, କେବଳ ନୀରବରେ ରତ୍ନମ ଆଡ଼କୁ ଚାହିଁ ପ୍ରାଣର ନିବେଦନ ତା'ର ଜଣାଇଗଲା, ଅଖିର ଦିଟୁନ୍ଦ ଗୁହାଣୀ ଜରିଆରେ । ରତ୍ନମା ମର୍ମେ ମର୍ମେ ସେ ଅବ୍ୟକ୍ତ ଭାଷା ବୁଝିପାରିଲା, ପ୍ରାଣଟା ତା'ର ହାହାକାର କରି କାନ୍ଦିଉଠିଲା । ଧରମୁ ଟିକିଏ ହସିଦେଇ ଦୁଃଖଟା ଗୋପନ କରିବାକୁ ଯାଇ ପୁଣି ପଡ଼ିଗଲା ତା'ର ରତ୍ନମା ପ୍ରାଣରେ ।

ହଠାତ ଗାର୍ଡ଼ ସାହେବର ସିଟି ବାଜିଉଠିଲା । ନିର୍ଦ୍ଦୟ ଇଞ୍ଜିନଟା ଏକ ବିରାଟ ଚିତ୍କାର କରି ଧକ୍‌ଧକ୍ ହୋଇ ଆଗକୁ ଧାଇଁ ଚାଲିଲା—ବିଦ୍ରୋହୀ ବନ୍ଦୀଗଣଙ୍କୁ ତାଙ୍କର ପ୍ରିୟଜନମାନଙ୍କ ଦୃଷ୍ଟିରୁ ଅନ୍ତର କରି । ରତନୀ 'ହାୟ ହାୟ' କରି ସେହି ନିମ୍ବଗଛ ମୂଳେ ହତଜ୍ଞାନ ହୋଇ ଖସିପଡ଼ିଲା । ଜନତା ଆଖିତଳେ ଅଶ୍ରୁ ଧରି ନିଜ ନିଜ ଘରକୁ ଫେରିଗଲେ ।

ଧରମୁ ରେଲ ଡବା ଭିତରେ ବସି ଝରକା ଦେଇ ବାହା-ରକୁ ଚାହିଁ ସେହି ଦୁଃଖାଭିମୁଖୀ ନିରୀହ ଅଶିକ୍ଷିତ ମୂକଜନତା ଆଡ଼କୁ ଚାହିଁରହିଥିଲା । ଇଞ୍ଜିନଟା ଧାଇଁ ଧାଇଁ ଆସି କାଲ ନଦୀର ପୋଲ ଉପରେ ପଡ଼ି ଦ୍ୱିଗୁଣ ଶବ୍ଦ କରିଉଠିଲା । ହଠାତ୍ ଧରମୁର ଦୃଷ୍ଟି ଯାଇ ପଡ଼ିଲା ସେଇ ପଳାଶ ଗଛଟା ଉପରେ—ଯାହାର ମୂଳରେ ସେ ତାର ରକ୍ତ ମାଂସର ପ୍ରତିନିଧିକୁ କେଇ ହାତ ମାଟି ତଳେ ସାଇତି ରଖିଛି ! ସେଇ ଗଛର ନାଲି ନାଲି କେଇଟା ସୁନ୍ଦର ଫୁଲଆଡ଼କୁ ଚାହିଁ ଆଖିରୁ ତା'ର ଝରଝର ହୋଇ ଲୁହ ଖସି-ପଡ଼ିଲା । କ୍ରମେ କ୍ରମେ ତା'ର ପରିଚିତ ସ୍ଥାନ ସବୁ ଗୋଟି ଗୋଟି ହୋଇ ତା'ର ଆଖି ଆଗରୁ ଲିଭିଗଲା । ଏଣିକି ଗୋଟିଏ ଗୋଟିଏ ହୋଇ ତାର ଅତୀତ ଜୀବନର ଘଟଣାବଳୀ ତା' ସମ୍ମୁଖରେ ନାଚି ଉଠିଲା ! ଖୋର୍ଦ୍ଧାର ସେଇ ପଲ୍ଲୀ ଗାଁ—ଉରସବାଇ । ଗୋଟେ କୁଡ଼ିଆ ଖଣ୍ଡିକରେ ଶୈଶବ ତା'ର କଟାଇଥିଲା—ବାପମା'ଙ୍କୁ ହରାଇ ଏକୁଟିଆ ହୋଇ । ପିଲାଦିନେ ଉରସବୋଇରେ ସେଇ ଫଗୁ ଖେଳ ଅଜ ଦିଅଁ ମେଳନ ଏବେ ସୁଦ୍ଧା ତା'ର ସ୍ପଷ୍ଟ ମନେ ଅଛି । ଯେମିତି ଟିକିଏ ବଡ଼ ହେଲା, ସତ୍ୟବାଦୀ ମଉସା ଘରକୁ ତା'ର ଚାଲି ଆସିଲା । ସେଇଠି ସତ୍ୟବାଦୀର ବକୁଳବନ

ଆଶ୍ରମରେ ଉଚ୍ଚ ଟିକିଏ ଶିକ୍ଷାଦୀକ୍ଷା ଲାଭ କରିଥିଲା । ମଉସା ତାର ସାଖିଗାଁ ଗଡ଼କୁଣ୍ଡର ଏକ ଦରିଦ୍ର ଶିକ୍ଷାପ୍ରାପ୍ତ ବଂଶର କଣେଶ୍ର କନ୍ୟା ସହିତ ତାକୁ ହାତକୁ ହାତ କରି ଦେଇଥିଲେ । ତାପରେ ଉତ୍କଳମଣି ଗୋପବନ୍ଧୁଙ୍କ ସହ ସେ ଆସିଲା ସିଂହଭୂମି ସମ୍ମିଳନୀ ପ୍ରେସକୁ ଦପ୍ତରୀ ହୋଇ । କିନ୍ତୁ ନିୟତି ଯେ ତାକୁ 'କୁଲି' କରି ପୃଥିବୀକୁ ପଠାଇଥିଲା ! ଗୋପବନ୍ଧୁ ଗଲେ । ସମ୍ମିଳନୀ ପ୍ରେସ ଗଲା । ଶେଷରେ ସେ ବୁଲିବୁଲି ଗୁଆ ଲଦା ଖଣିରେ କାମପାଇ ହେଲା କୁଲି !

କୁଲିଗିରି କରିବାକୁ ତା'ର ମୂଳରୁ ଆପତ୍ତି ନ ଥିଲା ଧା କୁଲିଗିରିକୁ ସେ ଆଦୌ ଅସମ୍ମାନ କରୁ ନ ଥିଲା । କେବଳ ଅଶିକ୍ଷିତ ଅତ୍ୟାଚାର ଉପରେ ଯେଉଁ ପ୍ରତିଷ୍ଠାନର ମୂଳନୁଆ ଦିଆ, ସେଇଠାକୁ ସେ କେବେହେଲେ ଭଲ ଦୃଷ୍ଟିରେ ଦେଖିପାରି ନାହିଁ । ତେଣୁ ସେ ତା'ର କର୍ତ୍ତୃପକ୍ଷକୁ କେବେହେଲେ ସନ୍ତୁଷ୍ଟ କରି-ପାରି ନାହିଁ । ମେନେଜରଙ୍କ ଯେତେବେଳେ କୋଠି ଫ୍ରେଶଲାଇନ୍ ପିନ୍ଧି ମଝିରେ ବସି ଧୂଳି ଉଡ଼ାଇ ପହଞ୍ଚି ଯାଆନ୍ତି, ଗମ୍ଭୀର ଗଣ୍ଡା ସିଗାରେଟ୍, ନାଆଁ ଲଗାଇ ପାଉଁଶ କରି ଦିଅନ୍ତି,—ଧରମୁ ଯେତେବେଳେ ଭାବେ, କେଉଁ ଅଧିକାର ନେଇ ଏ ମେନେଜର ତାଙ୍କ ଉପରେ ଅଧିପତ୍ୟ ଓ ଅତ୍ୟାଚାର କରିଦିଅନ୍ତି । ଖାଦାନ ଆଜି ଚାଲିଛି ତ କୁଲିଙ୍କୁ କେବଳ ତାଙ୍କର ପରିଶ୍ରମ ଉପରେ ନିର୍ଭର କରି । ତା'ହେଲେ ଏଇ ମେନେଜର ବା ତାଙ୍କର ମାଲିକ, ଆଜି ଏଠି ଶ୍ରମିକ କୁଲି—ସ୍ତ୍ରୀଙ୍କ ମଧ୍ୟରେ ମନିଷ ହିସାବରେ ଅଧିକାର ସମାନ ହୁଏ ନାହିଁ କାହିଁକି ? କିଏ ସିନା ତାକୁ ଆଜି ଏ ବେଶରେ ସଜାଇ ଦେଇଛି ।

ସେ ଆଜ ( ୍ଵା ବନ୍ଦୀ । ତାର ଯୌବନର ସ୍ୱପ୍ନଟା ତଳବାଳ ବ୍ୟର୍ଥପ୍ରେମ ଭିତରେ ଲିଭିଯାଇ ନାହିଁ । ତା ଭିତରେ ଅନେକ କଳ୍ପନା ଭରି ରହିଥିଲା । ଏଣେ ରତମୀ,—ତା ପାଇଁ ନିଜ ନିଜକୁ ରିକ୍ତ କରି ଦାଣ୍ଡରେ ଆସି କାଙ୍ଗାଳିନୀ ବେଶରେ ଛିଡ଼ା-ହେଲା —ତାକୁ ବି ସେ ପ୍ରାଣ ଦେଇ ଭଲ ପାଇଛି !—ଶ୍ରଦ୍ଧା କରିଛି । ଆଜ ବଦାସ୍ତ ଦିନରେ ସେ ସେହି ଅଚ୍ଛେଦ୍ୟ ପ୍ରେମର ସ୍ମୃତିଟାକୁ କୌଣସି ପ୍ରକାରେ ପାଶୋରି ପାରୁ ନାହିଁ । ଦୀର୍ଘ-ନିଃଶ୍ୱାସଟାଏ ପକାଇ ସେ ତାର ବନ୍ଦୀ ବନ୍ଧୁମାନଙ୍କ ଆଡ଼କୁ ଚାହିଁ ଟିକିଏ ହସିଦିଏ, ମାତ୍ର ହସଟା ତା'ର ବିକୃତ ହୋଇ ପଦାକୁ ବାହାରି ପଡ଼େ ।

ରତମୀର ଯେତେବେଳେ ଚେତନା ଆସେ—ସେ ଦେଖେ-ସେ ତାର ଭଙ୍ଗା କୁଡ଼ିଆଟିରେ ଶୋଇଛି, ତା' ମୁଣ୍ଡ ପାଖକୁ ହରିବୋଉ ବସି ପଙ୍ଖା କରୁଛି । ଗୋଟି ଗୋଟି ହୋଇ ଦିନଟା-ଯାକର ସବୁକଥା ତା'ର ମନେ ପଡ଼ିଯାଏ । ସେତେବେଳେ ସମ୍ମୁଖର ସେହି ଠିକାଦାର ବଙ୍ଗଳା ଆଡୁ ସଙ୍ଗୀତର ତାନ ଭାସିଆସେ—ତା'ର ଭଙ୍ଗାକୁଡ଼ିଆ ଆଡ଼କୁ । ସେ ମନେ ମନେ କହିଉଠେ—'ଓଃ କି ପାଷାଣ, କି ନିର୍ଦ୍ଦୟ ! ଅଜି ଦିନକପାଇଁ ହେଲେ ତାର ଏ ଅନନ୍ଦର ଗୀତସୁର ପରିବର୍ତ୍ତେ ଗୋଟିଏ କରୁଣ ରାଗିଣୀ ବଜାଇ ଦେ ଭଲା !' ହଠାତ୍ ସେହି ବଙ୍ଗଳା ଭିତରୁ ଶୁଭେ ଦୋଉଟିଭାଷାର ମଧୁରସ୍ୱର ଭାସିଆସେ—'ମା' 'ମା' । —ରତମୀ ଛାତିଟାକୁ ଖୁବ୍ ଜୋରରେ ଚପିଧରି କାନ୍ଦିଉଠେ— 'ମୋ ନିଧିରେ—ମୋ ସୁନାଧନରେ !' ହରିବୋଉ

ତାକୁ ସାନ୍ତ୍ୱନା ଦେବାକୁ ବ୍ୟର୍ଥ ଚେଷ୍ଟା କରି ନିଜେ କାନ୍ଦି ପକାଏ ।

କିଛିକ୍ଷଣ ପରେ ରତନୀ ନିଜକୁ ସମ୍ଭାଳି ନେଇ ଥିରହୋଇ ହରବୋଲକୁ ଦଣ୍ଡେ ଗୁହାଁରିବ କଣ ଭାବିଲା—ପୁଣି ଆଖିବୁଜି ଛିଣ୍ଡା ପଟିଆ ଖଣ୍ଡିକରେ ଗଡ଼ପଡ଼ିଲା । ହରବୋଲ ତାକୁ ବୃଥା ସାନ୍ତ୍ୱନା ଦେବାକୁ ଯାଇ କ୍ରମେ ନିଜେ ଅଧୀର ହୋଇପଡ଼ିଲା—। ତା'ର ସାରିଲା ପୁଅ ଯେ ଆଜକୁ ଦଶ ଦିନ ହେଲା ଅଦୃଶ୍ୟ ହୋଇ-ଯାଇଛି । କିଛିକ୍ଷଣ ପରେ ସେ ଆଖିପୋଛି ଉଠି ଛିଡ଼ାହେଲା । ଆଉ ରତନୀର କଂସାଖଣ୍ଡିକ ନେଇ ତା ଘରୁ ଭାତ ଦଶଟା ଆଣିବାକୁ ଚାଲିଗଲା । ହରବୋଲ ଯେମିତି କଂସାଟି ନେଇ ତା କୁଡ଼ିଆ ଆଡ଼କୁ ଚାଲିଯାଇଛି—ରତନୀ ଧୀରେ ଧୀରେ ଘରୁ ପାଦ କାଢି ସେଇ ମେଘ ଅନ୍ଧାର ଭିତରେ ଲୁଚିମାଇ ଧାଇଁଗଲା—କାଳନଦୀର କୂଳଆଡ଼କୁ !

ସେତେବେଳେ ଚତୁର୍ଦ୍ଦିଗ ଗାଢ଼ ଅନ୍ଧକାରାଚ୍ଛନ୍ନ । ଗମ୍ଭୀର-ରାତି । କିଛିକ୍ଷଣ ପୂର୍ବରୁ ହତଭାଗ୍ୟଗଣଙ୍କର ଶୋକଦୁଃଖରେ ସହାନୁଭୂତି ଦେଖାଇବାକୁ ଯାଇ ପ୍ରକୃତିଦେବୀ ବଡ଼ବର୍ଷା ରୂପରେ ବୋହି ଯାଇଥାଆନ୍ତି । କାଳନଦୀର ଗୋଳିଆପାଣି ଫୁଲି ଫୁଲି ଉଠି ଧାଇଁ ଯାଉଥାଏ । ରତନୀ ନୀରବରେ ଯାଇ ଛିଡ଼ାହେଲା ତା'ର କୂଳରେ । ସମ୍ମୁଖରେ ରେଲପୋଲ ତଳେ ବୀର ସହୃଦ୍‌ମାନଙ୍କର ଚିତାନଳ ହୁତୁ ହୁତୁ ହୋଇ ଜଳି ଉଠୁଥିଲା—ଯେଉଁଠି ତା'ର ଦେଢ଼ବର୍ଷର ଆଦରର ଧନ ପ୍ରଥମ ସହୃଦ୍ ଧରଣୀ କୋଳରେ ଚିରଦିନ ପାଇଁ ଶାନ୍ତିରେ ଶୋଇଛି ! ପାଦତଳ ତା'ର ସମସ୍ତ

ପୃଥିବୀଟା ଯେପରି ଟିକିଏ ଟିକିଏ ହୋଇ ତଳକୁ ଦବିଗଲା । ସେ ଆଉ ଠିଆ ହୋଇପାରିଲା ନାହିଁ—ସେଇଠି ଖସିପଡ଼ିଲା ।

ପରଦିନ ସକାଳୁ ହରିବୋଉଠାରୁ ଖବର ପାଇ କେତେଜଣ ରତ୍ନୀକୁ ଖୋଜି ଖୋଜି ଆସି କାଳନଦୀକୂଳରେ ଦେଖନ୍ତି— ଝାମ୍ପୁରା ବରଗଛ ଡାଳରେ ପିନ୍ଧିଲା ଶାଢ଼ୀଟି ବେକରେ ବାନ୍ଧି ଓହଳିଛି—'ରତ୍ନୀ' !